ବୁଦ୍ଧି ପାଇଁ ବ୍ୟାୟାମ

# ଗପ ପଢ଼ିବ ବୁଦ୍ଧି ବଢ଼ିବ



ସୁରେନ୍ଦ୍ର ନାଥ ସାହୁ

Source: Author, Digitized by PPRACHIN, SOA

ବୁଦ୍ଧି ପାଇଁ ବ୍ୟାୟାମ

# ଗପ ପଢ଼ିବ ବୁଦ୍ଧି ବଢ଼ିବ

ସୁରେନ୍ଦ୍ର ନାଥ ସାହୁ



ବିଦ୍ୟା ପ୍ରକାଶନ
ବାଲୁବଜାର, କଟକ-୭୫୩ ୦୦୨

Source: Author, Digitized by PPRACHIN, SOA

ଗପ ପଢ଼ିବ ବୁଦ୍ଧି ବଢ଼ିବ – ଲେଖକ : ସୁରେନ୍ଦ୍ର ନାଥ ସାହୁ, ପ୍ରକାଶକ : ବିଦ୍ୟା ପ୍ରକାଶନ, ବାଲୁବଜାର, କଟକ-୭୫୩ ୦୦୨, ପ୍ରଚ୍ଛଦପଟ : ରଂଜିତ୍ ପରିଜା, ଡି.ଟି.ପି. : ୟୁନିଟେକ୍, କଟକ, ମୁଦ୍ରଣ : ଲକ୍ଷ୍ମୀ ଅଫ୍‌ସେଟ୍ ପ୍ରେସ୍, କଟକ ।



**GAPA PADHIBA BUDHI BADHIBA** – Written by : Surendra Nath Sahu, Published by : Bidya Prakashan, Balubazar, Cuttack-753 002, Odisha (India), Cover Design : Ranjit Parija, D.T.P. by : Unitech, Cuttack, Printer : Laxmi Offset Press, Cuttack.

© Publisher

First Edition **2005**
Third Edition **2012**

ISBN : 81-7703-059-0

Price : **Rs. 35**

*Source: Author, Digitized by PPRACHIN, SOA*

# ମୋ କଥା

ପିଲାମାନେ, ତୁମକୁ ଯଦି ପ୍ରଶ୍ନ କରାଯିବ, ଗୋଟିଏ ବନ୍ଦ-ଡବା ଭିତରେ ନଅଟି ବେଙ୍ଗ ଥିଲା । ଅଣନିଃଶ୍ୱାସୀ ହୋଇ ତା'ଭିତରୁ ତିନିଟା ବେଙ୍ଗ ମରିଗଲା । ଡବାରେ କେତୋଟି ବେଙ୍ଗ ରହିଲା । ଅଧିକାଂଶ ପିଲା ଉତ୍ତର ଦେବେ, 'ଛଅଟି' । ତା' ମାନେ, ମଲାବେଙ୍ଗ ତିନିଟା କ'ଣ ଡବା ଭିତରୁ ଉଡ଼ିଗଲେ ? ଏପରି ପ୍ରଶ୍ନର ଉତ୍ତର ଯେଉଁମାନେ ଭାବିଚିନ୍ତି ଅଥଚ୍ ଶୀଘ୍ର ଏବଂ ସଠିକ୍ ଭାବେ ଦେଇ ପାରନ୍ତି, ସେମାନଙ୍କୁ ହିଁ କୁହାଯିବ – ବିଚକ୍ଷଣ ବୁଦ୍ଧିସମ୍ପନ୍ନ ପିଲା ।

ଏପରି ଅନେକ ପ୍ରଶ୍ନ ଅଛି ଯାହାର ଉତ୍ତର ପାଇବା ପାଇଁ ଆମ ମସ୍ତିଷ୍କକୁ ବେଳେବେଳେ କସରତ୍ କରିବାକୁ ପଡ଼େ । ମସ୍ତିଷ୍କର ଏହି କସରତ୍ ଆମ ବୁଦ୍ଧିର ବିକାଶପାଇଁ ସାହାଯ୍ୟ କରେ । ଖାଦ୍ୟ ସହିତ ବ୍ୟାୟାମ ଯେପରି ଶରୀରକୁ ସୁସ୍ଥ-ସବଳ ରଖେ, ଜ୍ଞାନ ଆହରଣ ସହିତ 'ବୁଦ୍ଧିର ବ୍ୟାୟାମ' ଆମ ବୌଦ୍ଧିକ ଶକ୍ତିକୁ ପରିପୁଷ୍ଟ କରେ । ତୁମେମାନେ ଅଧିକ ପାଠ ପଢ଼ି ଯେତେବେଳେ ବଡ଼ବଡ଼ ପରୀକ୍ଷାରେ ବସିବ, ସେଠାରେ ତୁମର ବୌଦ୍ଧିକ ବିଚକ୍ଷଣତା ବା 'ଆଇ.କ୍ୟୁ' ପରୀକ୍ଷା କରାଯିବ । ଆଜିଠାରୁ ତୁମେମାନେ ଯଦି ନିୟମିତ ବୌଦ୍ଧିକ ବ୍ୟାୟାମ କରି ବୁଦ୍ଧିକୁ ସୁସ୍ଥ-ସବଳ ନ ରଖ, ସେତେବେଳେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା କାଠିକର ପାଠ ହୋଇ ପଡ଼ିବ ।

ତୁମେମାନେ ଗପ ପଢ଼ିବାକୁ ଭଲପାଅ । ଏ ବହିରେ ମଧ୍ୟ ମଜାମଜା ଗପ ହିଁ ଅଛି । ପ୍ରତି ଗପ ଶେଷରେ ତୁମପାଇଁ ଗୋଟେ ଲେଖା କଉତୁକିଆ ପ୍ରଶ୍ନ ଅଛି । ଶେଷ ପୃଷ୍ଠାରେ ଉତ୍ତର ମଧ୍ୟ ଅଛି । କିନ୍ତୁ ମନେରଖ, ଉତ୍ତର ଦେଖିବାକୁ ଆଦୌ ତରବର ହେବନି । ପ୍ରଥମେ ନିଜେ ଉତ୍ତର ଦେବାକୁ ଚେଷ୍ଟା କରିବ, ତା'ପରେ ବହିର ଉତ୍ତର ସହିତ ତାକୁ ମିଳାଇବ ।

ହଁ, ଏଥିରେ ତୁମେ ପଢୁଥିବା ସବୁପାଠ ବିଷୟରେ ଆଲୋଚନା କରାଯାଇଛି । ଯେପରିକି ଗଣିତ, ବିଜ୍ଞାନ, ଭୂଗୋଳ, ଇତିହାସ, ସାହିତ୍ୟ ଇତ୍ୟାଦି । 'ଗପ ପଢ଼ିବ ବୁଦ୍ଧି ବଢ଼ିବ' ବହିଟି ପଢ଼ିବା ଦ୍ୱାରା ପଠନ ଆନନ୍ଦ ମିଳିବା ସହିତ ଯଦି ତୁମମାନଙ୍କ ବୁଦ୍ଧିର କିଞ୍ଚିତ୍ ବିକାଶ ହୋଇପାରିଲା, ତା'ହେଲେ ଶ୍ରମ ସାର୍ଥକ ହେଲା ଜାଣିବି ।

## ଉତ୍ସର୍ଗ

ଯାହାର ଶୁଭେଚ୍ଛା ଓ ପ୍ରେରଣାକୁ ପାଥେୟ କରି ଏ ଗପଗୁଡ଼ିକ ଲେଖାଯାଇଛି । ଓଡ଼ିଆ ସାହିତ୍ୟର ସେହି ଲବ୍ଧ ପ୍ରତିଷ୍ଠ ସଂସ୍କାରକାମୀ-ସାରସ୍ୱତ ସାଧକ ଡକ୍ଟର ଶୁଭେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହଙ୍କ କର-କମଳରେ ।

ତାଳଚେର ଥର୍ମାଲ

ଗଣେଶ ଚତୁର୍ଥୀ — ସୁରେନ୍ଦ୍ର ନାଥ ସାହୁ

Source: Author, Digitized by PPRACHIN, SOA

# ସୂଚୀପତ୍ର





Source: Author, Digitized by PPRACHIN, SOA

# ।। ଅପୂର୍ବ ମିଳନ ।।

ଅମିତ୍‌ର ବାପା ଜଣେ ସରକାରୀ ଚାକିରିଆ । ଅମିତ୍ ଯେଉଁ ବର୍ଷ ପଞ୍ଚମଶ୍ରେଣୀ ପାସ୍ କଲା, ସେଇ ବର୍ଷ ତା' ବାପାଙ୍କ ବଦଳି ହେଲା । ବଦଳି ହୋଇ ସେମାନେ କୋରାପୁଟରୁ ଆସିଲେ ପୁରୀ । ପୁରୀ ସହରର ଗୋଟେ ହାଇସ୍କୁଲରେ ଅମିତ୍‌ର ନାଁ ଲେଖାହେଲା । ସେ ଷଷ୍ଠରେ ପଢ଼ିଲା । ସେହି ଶ୍ରେଣୀରେ ଅଙ୍କିତ୍ ନାମକ ଜଣେ ପିଲା ସହିତ ତା'ର ବନ୍ଧୁତା ହେଲା । ଅଙ୍କିତ୍ ଭାରି ଭଲ ପିଲା । ଖୁବ୍ କମ୍ ଦିନ ଭିତରେ ଦୁହିଁଙ୍କ ବନ୍ଧୁତା ନିବିଡ଼ ହୋଇଗଲା ।

ଦିନେ ଅମିତ୍ ଯାଇଥିଲା ଅଙ୍କିତ୍ ଘରକୁ । ଅଙ୍କିତ୍‌ର ବାପା ବୋଉ ଅମିତ୍‌କୁ ଦେଖି ଭାରି ଖୁସି ହେଲେ । ଘରେ ଅଙ୍କିତ୍‌ର ଜେଜେ ମଧ୍ୟ ଥିଲେ । ଅମିତ୍ ଜେଜେଙ୍କ ପାଦ ଛୁଇଁ ପ୍ରଣାମ କଲା । ଜେଜେ ଅମିତ୍‌କୁ ସ୍ନେହରେ କୋଳେଇ ନେଇ ପାଖରେ ବସାଇଲେ । କହିଲେ,''ଅମିତ୍, ଆମ ଅଙ୍କିତ୍ ମୋତେ ସବୁଦିନେ ତୋ ବିଷୟରେ କହେ । ଯା'ହେଉ ତୁ ଆଜି ଆସିଲୁ, ଭଲ ହେଲା । ଆମ ପରିଚୟ ହୋଇଗଲା ।''

ଅମିତ୍ କହିଲା, ''ଜେଜେ, ଆମ ଘରେ ମୋର ମଧ୍ୟ ଜଣେ ଜେଜେ ଅଛନ୍ତି । ଠିକ୍ ତୁମରି ପରି ଚନ୍ଦାମୁଣ୍ଡିଆ, ପାଚି ପାକୁଆ । ସେ ମୋତେ ସବୁଦିନ ମଜା ମଜା ଗପ ଶୁଣାନ୍ତି । ଆଜି ତୁମେ ଆମକୁ ଗୋଟେ ମଜା ଗପ କୁହ ।''

ଜେଜେ କହିଲେ, ''ଗପ କ'ଣ ଶୁଣିବରେ ପିଲେ, ସତ ଘଟଣାଟିଏ କହୁଛି ଶୁଣ । ତୁମ ଦୁହିଁଙ୍କୁ ଦେଖିବାରୁ ମୋ' ପିଲାଦିନ କଥା ମନେ ପଡୁଛି । ସପ୍ତମଶ୍ରେଣୀରେ ପଢ଼ିବା ବେଳେ ମୋର ମଧ୍ୟ ଜଣେ ସାଙ୍ଗ ଥିଲା । ନାଁ ତାର 'ବାନା' । ମୋ' ଡାକ ନାଁ ଥିଲା 'ବନା' । ଆମେ 'ବାନା' ଆଉ 'ବନା' ଦୁହେଁ ଭାରି ସାଙ୍ଗ । ମୁଁ ପ୍ରାୟ ସତୁରି ବର୍ଷ ତଳର କଥା କହୁଛି । ସେତେବେଳେ ଗାଁ ଗଣ୍ଡାର ଲୋକେ ସାଇକେଲ୍ ଦେଖିନଥିଲେ । ସାଇକେଲ୍ ଭାରତରେ ତିଆରି ହେଉନଥିଲା, ଆସୁଥିଲା ବିଦେଶରୁ । ସହରର ଉଚ୍ଚଶିକ୍ଷିତ ଓ ଧନୀମାନୀ ଲୋକେ ହିଁ ସାଇକେଲ୍ ଚଢୁଥିଲେ । ଜମିଦାର ହିସାବରେ ଆମ ପାଞ୍ଚଖଣ୍ଡ

Source: Author, Digitized by PPRACHIN, SOA

ମୌଜାରେ ମୋ ବାପାଙ୍କର ପ୍ରତିପତ୍ତି ଥିଲା । ଗାଁକୁ ପ୍ରଥମ କରି ସେ ଗୋଟେ ସାଇକେଲ୍ ଆଣିଲେ । ସାଇକେଲ୍‌କୁ ଲୋକେ କହୁଥିଲେ ଶୂନଗାଡ଼ି । ସେହି ଶୂନଗାଡ଼ି ଦେଖିବା ପାଇଁ ଆମ ଘରେ ପ୍ରାୟ ସପ୍ତାହେ କାଳ ଲୋକଙ୍କ ଧାଡ଼ି ଲାଗିଲା । ମୋତେ ସାଇକେଲ୍ ଶିଖିବାକୁ ଲାଗିଗଲା ପୂରା ଦୁଇମାସ । ବାନା ମଧ ଅଳ୍ପ ଅଳ୍ପ ଶିଖିଗଲା ।



ଦିନେ ମୁଁ ବାନାକୁ ପଛ କ୍ୟାରିୟରରେ ବସାଇ ବୁଲାଇ ନେଉଛି, ହଠାତ୍ ଗୋଟେ ଗଡ଼ାଣି ରାସ୍ତାରେ ଦୁହେଁ ପଡ଼ିଗଲୁ । ମୋର ବିଶେଷ କିଛି ହେଲାନି; କିନ୍ତୁ ବାନାର ବାଁ ଗୋଡ଼ଟା ବଳାଗଣ୍ଠି ପାଖରୁ ଭାଙ୍ଗିଗଲା । ସେତେବେଳେ ଏତେ ବଡ଼ ବଡ଼ ଡାକ୍ତର ନଥିଲେ କି ଡାକ୍ତରଖାନା ନଥିଲା । ତାକୁ ସୁସ୍ଥ ହେବାକୁ ପ୍ରାୟ ତିନିମାସ

Source: Author, Digitized by PPRACHIN, SOA

ଲାଗିଗଲା । ତାପରେ ବାନାକୁ ତା ବାପା ନେଇ ତା'ମାମୁଘରେ ଛାଡ଼ିଦେଲେ । କଟକ ସହରରେ ତା' ମାମୁଘର । ବାନା ସହରରେ ରହି ପାଠ ପଢ଼ିଲା । ମୁଁ ରହିଲି ଗାଁରେ । ତା' ପରଠାରୁ ଆମର୍ ଆଉ ଦେଖା ସାକ୍ଷାତ ନାହିଁ କି ଚିଠିପତ୍ର ଦେବା ନେବା ବି ନାହିଁ । ଆଜି ତୁମ୍ ଦୁଇ ସାଙ୍ଗଙ୍କୁ ଦେଖିବାରୁ ମୋ' ବାନା ସାଙ୍ଗ ଭାରି ମନେ ପଡୁଛି । କିଏ ଜାଣେ ସେ ମଧ୍ୟ ମୋ'ପରି ବୁଢ଼ାଟେ ହୋଇ କେଉଁଠି ବଞ୍ଚିଛି କି ମଲାଣି ?

ଅମିତ୍ କହିଲା, ହଉ ଜେଜେ, ତୁମେ ତୁମ ପିଲାଦିନ ସାଙ୍ଗକୁ ମନେପକାଇ ବସିଥାଅ । ଆମେ ଦୁହେଁ ଏବେ ଆମ ଘର ଆଡ଼େ ଟିକେ ବୁଲି ଯାଉଛୁ । ଏହା କହି ଦୁହେଁ ଚାଲିଲେ ଅମିତ୍ ଘରକୁ । ଅମିତ୍‌ର ଜେଜେ ଅଙ୍କିତ୍‌କୁ ଦେଖି ଖୁସିହେଲେ । ଅଙ୍କିତ୍ ତାଙ୍କୁ ପ୍ରଣାମ କଲା । ଜେଜେ ବଙ୍କୁଲି ବାଡ଼ି ଠୁକ୍ ଠୁକ୍ କରି ଆସି ଦୁଇ ସାଙ୍ଗଙ୍କ ପାଖରେ ବସିଲେ । ଅଙ୍କିତ୍ ପଚାରିଲା, ''ଜେଜେ, ଆମ ଘରେ ମୋର ମଧ୍ୟ ଜଣେ ଜେଜେ ଅଛନ୍ତି । ଠିକ୍ ତୁମରି ବୟସର । ହେଲେ ସେ'ତ ବଙ୍କୁଲି ବାଡ଼ି ଧରି ଚଲାବୁଲା କରୁନାହାନ୍ତି । ତୁମେ କାହିଁକି କରୁଛ ?''

ଜେଜେ କହିଲେ, '' କଣ କରିବିରେ ନାତିଆ । ପିଲାଦିନର କର୍ମଫଳ ଏବେ ମୋତେ ଭୋଗିବାକୁ ପଡୁଛି । ମୁଁ ଯେତେବେଳେ ତୁମରି ବୟସର ଥିଲି 'ବନା' ବୋଲି ମୋର ଜଣେ ସାଙ୍ଗ ଥିଲା । ତୁମେ ଦୁହେଁ ଯେମିତି, ଆମେ ଦୁହେଁ ମଧ୍ୟ ଥିଲୁ ଭାରି ଘନିଷ୍ଠ । ଥରେ ବନା ମୋତେ ସାଇକେଲ୍‌ରେ ବସାଇ ନେଉଥିଲା ହଠାତ୍ ଆମେ ପଡ଼ିଗଲୁ । ମୋ ବାଁ ଗୋଡ଼ଟା ଭାଙ୍ଗିଗଲା । ବହୁତ ଚିକିତ୍ସା ପରେ ଭଲ ହେଲା । ବଳ ବୟସ ଥିଲା ବୋଲି ଜଣା ପଡୁନଥିଲା । ଏବେ, ବୁଢ଼ାକାଳକୁ ଭଙ୍ଗା ହାଡ଼ ପୁଣି ଯନ୍ତ୍ରଣା ହେଉଛି । ବଙ୍କୁଲି ବାଡ଼ି ନଧରିଲେ ଚାଲି ପାରୁନି । ତୁମ ଦୁହିଁଙ୍କୁ ଦେଖିଲେ ମୋ ପିଲାଦିନର ସାଙ୍ଗ ବନା କଥା ଭାରି ମନେ ପଡୁଛି । ଦୀର୍ଘ ସତୁରି ବର୍ଷ ହୋଇଗଲା । ଆମର ଆଉ ଦେଖା ସାକ୍ଷାତ ନାହିଁ । ହେଲେ ପିଲେ, ମୁଁ ଆର୍ଶୀବାଦ କରୁଛି, ତୁମେ ଦୁଇସାଙ୍ଗ ଜୀବନରେ କେବେ ହେଲେ ସମ୍ପର୍କ ତୁଟେଇବନି । ବନ୍ଧୁତା ଛାଡ଼ିବନି ।''

ଦୁଇ ଜେଜେଙ୍କ କଥା ଶୁଣିବା ପରେ ଅଙ୍କିତ୍ ଓ ଅମିତ୍ ମନେ ମନେ ଭାରି ଖୁସି ଜଣା ପଡୁଥାନ୍ତି । ଅମିତ୍ କହିଲା, ''ହଉ ଜେଜେ, ତୁମେ ଆମକୁ ଆଶୀର୍ବାଦ ଦେଲ । ତା' ବଦଳରେ ଆମେ ତୁମକୁ ଆଜି ଗୋଟେ ଅଭୁଲା ଉପହାର ଦେବୁ । ଆମେ ଉପହାରଟା ନେଇ ଆସୁଛୁ, ତୁମେ ଏଠି ବସିଥାଅ ।'' ଏହା କହି ଦୁଇ ସାଙ୍ଗ ସେଠୁ ଚାଲିଗଲେ ।

Source: Author, Digitized by PPRACHIN, SOA

କିଛି ସମୟ ପରେ ଅମିତ୍ ଘର ଆଗରେ ଗୋଟେ ଅଟୋରିକ୍ସା ଠିଆହେଲା । ରିକ୍ସାରୁ ଓହ୍ଲେଇଲେ ଜଣେ ସଫା ଧୋତି କୁର୍ତ୍ତା ପିନ୍ଧିଥିବା ପାକୁଆ ବୁଢ଼ା । ସେ ଥିଲେ ଅଙ୍କିତ୍‌ର ଜେଜେ । ରିକ୍ସା ପଛେ ପଛେ ଅମିତ୍ ଓ ଅଙ୍କିତ୍ ମଧ୍ୟ ଆସି ପହଞ୍ଚିଗଲେ । ଅଙ୍କିତ୍‌ର ଜେଜେ ଯାଇ ଅମିତ୍‌ର ଜେଜେ ଆଗରେ ଠିଆ ହେଲେ । ଦୁଇ ବୁଢ଼ାଙ୍କ ଆଖିରେ ବିସ୍ମୟ । ଘରର ଅନ୍ୟମାନେ ମଧ୍ୟ ଆସି ପହଞ୍ଚିଗଲେ । ଘଟଣା କ'ଣ କେହି କିଛି ବୁଝି ପାରୁନଥାନ୍ତି । ଅମିତ୍ ହସି ହସି କହିଲା, ''ତୁମ ଦୁହିଁଙ୍କ ଭିତରୁ 'ବନା' କିଏ ଆଉ 'ବାନା' କିଏ ଆମକୁ ପରିଚୟ ଦିଅ ।''

ଅଙ୍କିତ୍‌ର ଜେଜେ କହିଲେ, ''ମୋ ନାଁ ବନମାଳୀ ଧର । ପିଲାଦିନେ ଡାକ ନାଁ ଥିଲା ବନା'' – ଅମିତ୍‌ର ଜେଜେ କହିଲେ, ''ମୋ ନାଁ ବାନାମ୍ବର ରଥ, ବାନା ।''

ପରିବାରର ସମସ୍ତେ ବିସ୍ମୟରେ ଦୁଇ ବୁଢ଼ାଙ୍କୁ ଅନାଇ ରହିଲେ । ଦୁଇ ବୃଦ୍ଧ ପରସ୍ପରକୁ ଚିହ୍ନିପାରିଥିଲେ । ଦୁହେଁ ପରସ୍ପର ଆଡ଼କୁ ବାହୁ ପ୍ରସାରି ଆଗେଇ ଆସିଲେ । କୃଷ୍ଣ-ସୁଦାମା ପରି ଦୁହେଁ ଦୁହିଁଙ୍କୁ ଆଲିଙ୍ଗନ ଭିତରେ କିଛି ସମୟ ପାଇଁ ହଜିଗଲେ । ଯୁଗଟିଏ ପରେ ଦେଖା । ଆନନ୍ଦ ଓ ଆବେଗରେ ଉଭୟଙ୍କ ଆଖିରୁ ଲୁହ ଗଡ଼ି ପଡ଼ିଲା ।

ଏଣେ ଅଙ୍କିତ୍ ଓ ଅମିତ୍ ଦୁଇ ବୁଢ଼ାବନ୍ଧୁଙ୍କ ମିଳନ ଦେଖି ଖୁସିରେ ନାଚି ଉଠିଲେ । ଅମିତ୍ ତା' ଜେଜେଙ୍କୁ ପଚାରିଲା, ''ଆଚ୍ଛା ଜେଜେ, ତୁମେ ଦୁହେଁ ତ ଦେଖିବାକୁ ଏକାପରି, ଉଚ୍ଚତା ଏକା, ରଙ୍ଗ ଢଙ୍ଗ ମଧ୍ୟ ଏକା...ହେଲେ ବୟସ କାହାର କେତେ ?''

ଜେଜେ କହିଲେ, ''ଆରେ ପିଲେ, ତୁମେ ଶୁଣିଲେ ଆହୁରି ଆଶ୍ଚର୍ଯ୍ୟ ହେବ ଯେ – ଆମ ଦୁହିଁଙ୍କ ବୟସ ମଧ୍ୟ ଏକା । ତିଥି ଅଲଗା; ହେଲେ ଏକା ମସିହାରେ ଆମର ଜନ୍ମ ।''

''ତା'ହେଲେ ତୁମ ଦୁଇବନ୍ଧୁଙ୍କ ଜନ୍ମ କେଉଁ ମସିହାରେ ?'' ଅଙ୍କିତ୍ ପଚାରିଲା । ଅଙ୍କିତ୍‌ର ଜେଜେ କହିଲେ, ''ମସିହା କ'ଥା କଣ ଆମର ମନେ ଅଛି ? ହଁ, ଇତିହାସର କେତୋଟି ଘଟଣା ସମ୍ପର୍କରେ ଆମେ କିଛି ସୂଚନା ଦେଇ ପାରିବୁ ସେଥିରୁ ହିସାବ କରି ତୁମକୁ କହିବାକୁ ପଡ଼ିବ ଆମର ଜନ୍ମ କେବେ । ତା'ହେଲେ ଶୁଣ– ଭାରତୀୟ ଜାତୀୟ କଂଗ୍ରେସର ଜନ୍ମ ଯେଉଁ ବର୍ଷ, ମୋ' ବାପାଙ୍କ ଜନ୍ମ ମଧ୍ୟ ଠିକ୍ ସେଇବର୍ଷ । ବାପାଙ୍କୁ ଯେତେବେଳେ କୋଡ଼ିଏ ବର୍ଷ, ସେ ବାହା ହେଲେ । ବାହାଘରର ଠିକ୍ ପାଞ୍ଚ ବର୍ଷ ପରେ ମୋ ବଡ଼ଭାଇ ଜନ୍ମ ହେଲେ । ମୋ ମଝିଆଁ ଭାଇ ବଡ଼ଭାଇଙ୍କଠୁ ଛ'ବର୍ଷ ସାନ ।

Source: Author, Digitized by PPRACHIN, SOA

ମଝିଆଁଭାଇଙ୍କୁ ପାଞ୍ଚ ବର୍ଷ ପୂରଣ ହେବାରୁ ପ୍ରଥମ ଶ୍ରେଣୀରେ ତାଙ୍କର ନାଁ ଲେଖାହେଲା । ତା'ପରବର୍ଷ ସେ ଦ୍ୱିତୀୟ ଶ୍ରେଣୀରେ ପଢ଼ିବା ବେଳକୁ ମୋର ଜନ୍ମ ।''

ଅମିତ୍‌ର ଜେଜେ ପାଳି ଧରି କହିଲେ । ମୋଁ ଜନ୍ମ ମଧ୍ୟ ଠିକ୍ ସେଇ ବର୍ଷ, ହେଲେ ଆମ ଜନ୍ମତିଥି ଅଲଗା । ନେତାଜୀ ସୁଭାଷଙ୍କ ଜନ୍ମତିଥି ଓ ମୋ ଜନ୍ମତିଥି ଏକା । ଆଉ ମୋ' ସାଙ୍ଗର ଜନ୍ମତିଥି ବାପୁଜୀଙ୍କ ଜନ୍ମତିଥି ଦିନ ।''

ଜେଜେମାନଙ୍କ ଜନ୍ମଦିନର ପ୍ରହେଳି ଅଙ୍କିତ୍ ଓ ଅମିତ୍‌କୁ ବଡ଼ ଅଡୁଆରେ ପକାଇ ଦେଲା । ଅଙ୍କିତ୍ ଗଲା ଇତିହାସ ବହି ଆଡ଼େଇବାକୁ, ଅମିତ୍ ଗଲା କାଗଜ କଲମ ଆଣି ହିସାବ କରିବାକୁ ।

ପିଲାମାନେ, ସେ ଦୁହେଁ ଖାତା କଲମ ଆଣିବା ପୂର୍ବରୁ ତୁମେମାନେ ହିସାବ କରି କହିପାରିବ କାହାର ଜନ୍ମଦିନ କେବେ ?



Source: Author, Digitized by PPRACHIN, SOA

# ।। ପଦକ ଚୋର ।।

ହରିପୁର ଗାଁ ହାଇସ୍କୁଲ୍‌ରେ ଦୀର୍ଘ ତିରିଶି ବର୍ଷ ଧରି ଗୋଟେ ଆଦର୍ଶ ପରମ୍ପରା ଚାଲି ଆସିଛି । ପ୍ରତିବର୍ଷ ସ୍କୁଲ୍ କମିଟି ତରଫରୁ ସ୍କୁଲ୍‌ର ସର୍ବଶ୍ରେଷ୍ଠ ଛାତ୍ରକୁ ସ୍ୱର୍ଣ୍ଣ ପଦକଟିଏ ଦିଆଯାଏ । ପାଠ ସହିତ ବିଭିନ୍ନ ପ୍ରତିଯୋଗିତା, ଖେଳକୁଦ ଏବଂ ଚରିତ୍ର ଗଠନ ଇତ୍ୟାଦିରେ ଯେଉଁ ପିଲା ସମସ୍ତଙ୍କଠାରୁ ଶ୍ରେଷ୍ଠ ବିବେଚିତ ହୁଏ, ତାକୁ ମିଳେ ସ୍ୱର୍ଣ୍ଣ ପଦକ । ପଦକଟି ପ୍ରାୟ ଦଶଗ୍ରାମ ଓଜନର ସୁନାରେ ତିଆରି । ତେଣୁ ପଦକ ପାଇବା ପାଇଁ ପିଲାଙ୍କ ମଧ୍ୟରେ ପ୍ରତିଯୋଗିତା ମନୋଭାବ ଦେଖାଦେବା ସ୍ୱାଭାବିକ କଥା ।

ସେ ବର୍ଷ ରାକେଶ ନାମକ ଜଣେ ଛାତ୍ର ସ୍ୱର୍ଣ୍ଣ ପଦକ ପାଇବା ପାଇଁ ବିବେଚିତ ହେଲା । ସ୍କୁଲ୍‌ର ବାର୍ଷିକୋତ୍ସବ ଅବସରରେ ପଦକ ଦିଆଯାଏ । କମିଟିର ସଭ୍ୟମାନେ ସବୁ ବର୍ଷ ପରି ବଣିଆ ଦୋକାନରେ ପଦକଟି ତିଆରି କରାଇ ଉତ୍ସବର ଦୁଇ ଦିନ ପୂର୍ବରୁ ସ୍କୁଲ୍ ପ୍ରଧାନ ଶିକ୍ଷକଙ୍କ ଜିମା ଦେଇଦେଲେ । ପ୍ରଧାନ ଶିକ୍ଷକ ମହାଶୟ ପଦକଟିକୁ ଅଫିସ୍ ଲୁହାଆଲମିରା ଭିତରେ ଅତି ଯତ୍ନର ସହିତ ରଖି ଚାବି ବନ୍ଦ କଲେ । ସ୍କୁଲ୍ ଛୁଟି ହେବାପରେ ଅଫିସ୍‌ଘର ତାଲା ପକାଇ ଚାଲିଗଲେ ।

ଆଶ୍ଚର୍ଯ୍ୟର କଥା, ପରଦିନ ସକାଳେ ଆସି ଦେଖିଲା ବେଳକୁ ଆଲମିରାରୁ ସୁନା ପଦକଟି ଚୋରି ହୋଇଯାଇଛି । ପ୍ରଧାନ ଶିକ୍ଷକଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ଏପରି ଘଟଣା ଆଗରୁ କେବେ ଘଟି ନଥିଲା । ସ୍କୁଲ୍ ପାଇଁ ତଥା ତାଙ୍କ ନିଜପାଇଁ ଘଟଣାଟି ଥିଲା ବଡ଼ ଦୁର୍ଭାଗ୍ୟଜନକ । ସେ କାଳବିଳମ୍ବ ନକରି ଘଟଣା ସମ୍ପର୍କରେ ପୁଲିସ୍‌କୁ ଜଣାଇଦେଲେ । ତୁରନ୍ତ ପୁଲିସ୍ ଆସି ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ କଲା ।

ପୁଲିସ୍ ଇନ୍ସପେକ୍ଟର ଦେଖିଲେ, ଚୋର ଅଫିସ୍-ତାଲା ଭାଙ୍ଗି ଭିତରେ ପଶିଛି ଏବଂ ଆଲମିରା ତାଲା ଭାଙ୍ଗି ପଦକଟିକୁ ଚୋରି କରିଛି । ଏଥିରୁ ସେ ନିଶ୍ଚିତ ହେଲେ ଯେ ଏ କାମ କୌଣସି ପେସାଦାର ଚୋର କରିଛି । ତହୁଁ ସେ କନେଷ୍ଟବଲମାନଙ୍କୁ ଡାକି ନିର୍ଦ୍ଦେଶ ଦେଲେ, ''ପୁଲିସ୍ ରେକର୍ଡ଼ରେ ଏ ଅଞ୍ଚଳର ଯେତେଜଣ ତାଲାଭଙ୍ଗା ଚୋରଙ୍କ

Source: Author, Digitized by PPRACHIN, SOA

ନାଁ ଅଛି, ସମସ୍ତଙ୍କୁ ଧରି ଆଣ ।'' କନେଷ୍ଟବଳମାନେ ଖେଦିଗଲେ ଏବଂ ଦିନସାରା ଖୋଜାଖୋଜି କରି ତିନିଜଣ ଚୋରଙ୍କୁ ପାଇଲେ । ସେମାନଙ୍କୁ ନେଇ ଥାନାରେ ହାଜର କରାଇଲେ । ଥାନାରେ ପ୍ରଧାନ ଶିକ୍ଷକ ଅପେକ୍ଷା କରି ବସିଥାନ୍ତି । ଚୋରମାନଙ୍କୁ ଦେଖୁ ଦେଖୁ ପ୍ରଧାନ ଶିକ୍ଷକ ଚିହ୍ନିପାରିଲେ । କାରଣ ସେ ତିନିହେଁ ଥିଲେ ତାଙ୍କରି ସ୍କୁଲ୍ର ପୁରାତନ ଛାତ୍ର । ବିଭିନ୍ନ କୁକର୍ମରେ ପଡ଼ି ଅଧାରୁ ପାଠ ଛାଡ଼ି ଚାଲି ଯାଇଥିଲେ । ସେ ସେମାନଙ୍କ ଚରିତ୍ର ବିଷୟରେ ମଧ୍ୟ ଭଲରୂପେ ଜାଣିଥିଲେ ।

ପୁଲିସ୍ ଇନ୍ସପେକ୍ଟର ଚୋରମାନଙ୍କ ଉପରକୁ ଲାଠି ଉଞ୍ଚାଇ କିଛି ପଚାରିବା ପୂର୍ବରୁ ପ୍ରଧାନ ଶିକ୍ଷକ ତାଙ୍କୁ ଅଳ୍ପ ଦୂରକୁ ଡାକିନେଇ କହିଲେ, ''ଦେଖନ୍ତୁ ଇନ୍ସପେକ୍ଟର ବାବୁ, ଏ ତିନିଙ୍କୁ ମୁଁ ଭଲରୂପେ ଜାଣେ । ଏମାନଙ୍କ ନାଁ ହେଲା ରାଧୁ, ମଧୁ ଓ ସାଧୁ । ତିନିହେଁ ମୋର ଛାତ୍ର ଥିଲେ । ତେଣୁ ଏମାନଙ୍କ ସ୍ୱଭାବ ଓ ଚରିତ୍ର ବିଷୟରେ ମଧ୍ୟ ମୁଁ ଅଳ୍ପ ବହୁତ ଜାଣେ ।''

ଇନ୍ସପେକ୍ଟର ବାବୁ ପୁଲିସିଆ ହସଟେ ହସି କହିଲେ, ''ଦେଖନ୍ତୁ ଆଜ୍ଞା, ଚୋରମାନଙ୍କ ଚରିତ୍ର ବିଷୟରେ ପୁଲିସ୍‌ବାଲାହିଁ ସବୁଠୁ ଅଧିକ ଜାଣନ୍ତି । ମୁଁ ଏ ତିନି ବଦମାସ୍‌ଙ୍କୁ ହାଡ଼େ ହାଡ଼େ ଚିହ୍ନିଛି । ଏଗୁଡ଼ା ଚୁପ୍‌ସଇତାନ୍ । ପଦକ ଏମାନଙ୍କ ଭିତରୁ ହିଁ କେହି ନିଶ୍ଚୟ ଚୋରି କରିଛି । ଦେଖନ୍ତୁ, ପୋଲିସିଆ ପାହାର ଖାଇଲେ ସବୁ ଏବେ ମାନିଯିବେ ।''

ପ୍ରଧାନ ଶିକ୍ଷକ ପୁଣି ବୁଝାଇଲେ, ''ଯଦି ସତରେ ଏମାନଙ୍କ ଭିତରୁ କେହି ଚୋରି କରିଥାଏ ଆପଣଙ୍କୁ ମିଛ ବି କହିପାରନ୍ତି । କିନ୍ତୁ ସେମାନଙ୍କ ମୁହଁରୁ କିପରି ସତକଥା ଆଦାୟ କରିବାକୁ ହୁଏ, ତା' ଉପାୟ ମୁଁ ଜାଣିଛି । ପଢ଼ିବା ସମୟରେ ମଧ୍ୟ ଶ୍ରେଣୀରେ ସେମାନେ ଛୋଟ ଛୋଟ ଚୋରି କରୁଥିଲେ ଏବଂ ସେମାନଙ୍କ ଚୋରି ମୁଁ ସେହି ଉପାୟରେ ଧରୁଥିଲି । ତେଣୁ ସେ ଦାୟିତ୍ୱ ଆପଣ ମୋ' ଉପରେ ଛାଡ଼ି ଦିଅନ୍ତୁ ।''

ଇନ୍ସପେକ୍ଟର ଆଶ୍ଚର୍ଯ୍ୟରେ ପଚାରିଲେ, ''ହେଲେ ଆଜ୍ଞା, ସେ ଉପାୟଟି କ'ଣ ?''

ପ୍ରଧାନ ଶିକ୍ଷକ ବୁଝାଇଲେ, '' ଦେଖନ୍ତୁ, ଆପଣ ଯାହା କହିଲେ, ଏ ତିନିହେଁ ଭାରି ଚୁପ୍‌ସଇତାନ୍ । ଖୁବ୍ କମ୍ କଥା କହନ୍ତି । ପ୍ରଥମ ଚୋର ରାଧୁ, ସେ କେବଳ ତିନୋଟି ପ୍ରଶ୍ନର ହିଁ ଉତ୍ତର ଦିଏ । ବାଡ଼େଇ ବାଡ଼େଇ ମାରିଦେଲେ ମଧ୍ୟ ଚତୁର୍ଥ ପ୍ରଶ୍ନର ଉତ୍ତର ତା ମୁହଁରୁ ଆପଣ ପାଇବେନି । ଯେଉଁ ତିନିଟା ପ୍ରଶ୍ନର ଉତ୍ତର ଦେବ, ତା ଭିତରୁ ଗୋଟିଏ

Source: Author, Digitized by PPRACHIN, SOA

ସତ ଏବଂ ଦୁଇଟା ମିଛ ହେଇଥିବ । ଠିକ୍ ସେମିତି ମଧୁ ନାମକ ଚୋରଟି କେବଳ ଦୁଇଟି ପ୍ରଶ୍ନର ଉତ୍ତର ଦିଏ । ତା ଭିତରୁ ଗୋଟିଏ ସତ, ଗୋଟିଏ ମିଛ । ଆଉ ସାଧୁ, ସବୁଠୁ ଚୁପ୍‌ଚାପ୍ କିନ୍ତୁ ସତୁଆ । ସେ କେବଳ ଗୋଟିଏ ପ୍ରଶ୍ନର ଉତ୍ତର ଦେବ ଏବଂ ତା ଉତ୍ତରଟି ନିଶ୍ଚୟ ସତ ହେଇଥିବ । ଏବେ ଦେଖନ୍ତୁ, ମୁଁ କେଉଁ ଉପାୟରେ ତାଙ୍କ ମୁହଁରୁ କଥା ଆଦାୟ କରୁଛି ।



ପ୍ରଧାନ ଶିକ୍ଷକଙ୍କ ଯୁକ୍ତି ଶୁଣି ଇନ୍ସପେକ୍ଟର ଚୁପ୍‌ଚାପ୍ ବସି ତମାସା ଦେଖିବାକୁ ସ୍ଥିର କଲେ । ପ୍ରଧାନ ଶିକ୍ଷକ ପ୍ରଥମେ ରାଧୁ ପାଖକୁ ଯାଇ ପଚାରିଲେ, "ଆଚ୍ଛା ରାଧୁ, ତୁମେ ସ୍କୁଲ୍‌ର ସ୍ୱର୍ଣ୍ଣ ପଦକ ଚୋରି କରିଛ ?'' ରାଧୁ ଗୋଟିଏ ଶବ୍ଦରେ ଉତ୍ତର ଦେଲା, ନା ।''

Source: Author, Digitized by PPRACHIN, SOA

''ତା'ହେଲେ କିଏ ଚୋରି କଲା ?'' ପ୍ରଧାନ ଶିକ୍ଷକ ଦ୍ୱିତୀୟ ପ୍ରଶ୍ନ ପଚାରିଲେ । ରାଧୁ କହିଲା, '' ସାଧୁ ଚୋରି କରିଛି ।''

''ସାଧୁ ପଦକ ଚୋରି କଲାବେଳେ ତୁମେ ଦେଖିଛ ?''

ରାଧୁର ତୃତୀୟ ଉତ୍ତର ଥିଲା, ନା ।

ପ୍ରଧାନ ଶିକ୍ଷକ ଦେଖିଲେ ରାଧୁ ଆଉ କୌଣସି ପ୍ରଶ୍ନର ଉତ୍ତର ଦେବନି । ତା'ପରେ ସେ ମଧୁ ପାଖକୁ ଯାଇ ପଚାରିଲେ, ''ମଧୁ, ତୁମେ ପଦକ ଚୋରି କରିଛ ?''

ମଧୁ କହିଲା, ନା ।

''ତା' ହେଲେ କିଏ ଚୋରି କଲା ?''

ମଧୁ ଦ୍ୱିତୀୟ ଉତ୍ତରରେ କହିଲା, ସାଧୁ ଚୋରି କରିଛି ।

ଏଥର ପ୍ରଧାନ ଶିକ୍ଷକ ସାଧୁକୁ ପଚାରିଲେ, ''ସାଧୁ, ତୁମେ ପଦକ ଚୋରି କରିଛ ବୋଲି ମଧୁ ଓ ରାଧୁ କହୁଛନ୍ତି । ଏ କଥା କ'ଣ ସତ ?''

ସାଧୁ କହିଲା, ପଦକ ମୁଁ ଚୋରି କରିନି ।

ପ୍ରଧାନ ଶିକ୍ଷକ ଇନ୍ସପେକ୍ଟରଙ୍କୁ କହିଲେ, ଆଜ୍ଞା ପଦକଟି ନିଶ୍ଚୟ ରାଧୁ ଚୋରି କରିଛି, ତାକୁ ହାତକଡ଼ି ପକାନ୍ତୁ ।

ଇନ୍ସପେକ୍ଟର ବୁଝିପାରିଲେନି, ଏତିକି କଥାବାର୍ତ୍ତାରୁ ପ୍ରଧାନ ଶିକ୍ଷକ କେମିତି ଜାଣିଲେ ଯେ ପଦକ ରାଧୁ ଚୋରି କରିଛି ବୋଲି । ତଥାପି ସେ ରାଧୁକୁ ହାତକଡ଼ି ପକାଇ ଧମକ ଚମକ ଦେବାରୁ ଚୁପ୍‌ଚାପ୍ ପଦକଟି ସେ ଫେରାଇଦେଲା । ପ୍ରଧାନ ଶିକ୍ଷକ ଶାନ୍ତିରେ ନିଃଶ୍ୱାସ ମାରିଲେ । ପରଦିନ ସକାଳେ ସ୍ୱର୍ଣ୍ଣ ପଦକଟି ଯେତେବେଳେ ରାକେଶ ଗଳାରେ ଶୋଭା ପାଇଲା, ସମସ୍ତେ ଖୁସି ହେଲେ ।

ହେଲେ ସେଇଦିନୁ ଇନ୍ସପେକ୍ଟର ବାବୁ ଧନ୍ଦି ହେଉଛନ୍ତି ସ୍ୱର୍ଣ୍ଣ ପଦକଟି ରାଧୁ ଚୋରେଇଥିଲା ବୋଲି ପ୍ରଧାନ ଶିକ୍ଷକ ଜାଣିଲେ କେମିତି ?

ପିଲାମାନେ, ତୁମେ ଜାଣିପାରିଲଟି, କେଉଁ ଯୁକ୍ତି ବଳରେ ପ୍ରଧାନ ଶିକ୍ଷକ ଏ ସମସ୍ୟାର ସମାଧାନ କଲେ ?



Source: Author, Digitized by PPRACHIN, SOA

## ।। ଉପସ୍ଥିତ ବୁଦ୍ଧି ।।

ବିଜୟ ଥରେ ତା ବାପା ଓ ବୋଉଙ୍କ ସାଙ୍ଗରେ ପୁରୀ ଯାଇଥିଲା । ଠାକୁର ଦର୍ଶନ ସାରି ସେମାନେ ଗୋଟେ ଭଡ଼ା କାର୍‌ରେ ଗାଁକୁ ଫେରୁଥାନ୍ତି । କାର୍ ପଛସିଟ୍‌ରେ ବସିଥାନ୍ତି ବିଜୟର ବାପା ଓ ବୋଉ । ବିଜୟ ଡ୍ରାଇଭର ପାଖ ସାମନା ସିଟ୍‌ରେ ବସିଥିଲା ।

ପୁରୀ ସହର ଛାଡ଼ିବା ପରେ, ତାଙ୍କ ଗାଁକୁ ଯିବାପାଇଁ ଗୋଟେ କଚ୍ଚା ସଡ଼କ ପଡ଼େ । ସେହି ଅଣଓସାରିଆ ସଡ଼କରେ ପ୍ରାୟ ଦଶ କି.ମି. ଗଲେ ଶରଧାପୁର ଗାଁ । କଚ୍ଚା ରାସ୍ତାରେ ଗାଡ଼ି ଖୁବ୍ ଧୀର ଗତିରେ ଚଳାଇବାକୁ ପଡ଼େ । ବିଜୟର ବାପା ବୋଉ ପଛ ସିଟ୍‌ରେ ବସି ଢୁଳାଉଥାନ୍ତି । ଡ୍ରାଇଭର ବଡ଼ ସତର୍କତାର ସହିତ ଗାଡ଼ି ଚଳାଉଥାଏ । ଏତିକିବେଳେ ବିଜୟର ଦୃଷ୍ଟି ଡ୍ରାଇଭର ସାମନାରେ ଲାଗିଥିବା ଅଇନା ଉପରେ ପଡ଼ିଲା । ଦେଖିଲା, ଗୋଟେ ନାଲି ମାରୁତି କାର ତାଙ୍କ ଗାଡ଼ି ପଛେ ପଛେ ଆସୁଛି । ବାରମ୍ବାର ହର୍ଣ୍ଣ ଦେଇ ଆଗକୁ ଯିବାକୁ ଚେଷ୍ଟା କରୁଛି; କିନ୍ତୁ ଅଣଓସାରିଆ ରାସ୍ତା ହେତୁ ଆଗ ଗାଡ଼ିକୁ ଟପି ଯାଇପାରୁନି । ଏପରି କିଛି ବାଟ ଯିବାପରେ ବିଷ୍ଣୁପୁର ଛକ ପଡ଼ିଲା । ସେ ଛକରୁ ମାରୁତି ଗାଡ଼ିଟା ବାଟ ଭାଙ୍ଗି ବାଁପଟ ରାସ୍ତାରେ ଦ୍ରୁତ ଗତିରେ ଚାଲିଗଲା । ବିଜୟର ଗାଡ଼ି ସିଧା ରାସ୍ତାରେ ଆଗକୁ ଚାଲିଲା । ସେଠାରୁ ଆଉ ପାଞ୍ଚ କି.ମି. ପରେ ତାଙ୍କ ଗାଁ ।

ଗାଡ଼ି ପ୍ରାୟ ଦୁଇ କି.ମି. ଯାଇଛି, ବିଜୟ ପୁଣି ଅଇନାରେ ଦେଖିଲା, ପଛରୁ ଗୋଟେ ପୁଲିସ୍ ଜିପ୍ ଆସୁଛି । ପୋଲିସ୍ ଗାଡ଼ି ଦେଖି ଡ୍ରାଇଭର ନିଜ ଗାଡ଼ିର ଗତି କମାଇଦେଲା । ପଛରୁ ଜଣେ ପୁଲିସ୍ ଚିତ୍କାର କଲେ – ଗାଡ଼ି ରଖ, ଗାଡ଼ି ରଖ । ଡ୍ରାଇଭର ଗାଡ଼ିର ଗତି ବନ୍ଦକଲା । ପୁଲିସ୍ ଜିପ୍ କାର୍ ଆଗକୁ ଆସି ଅଟକିଲା । ଜଣେ ପୁଲିସ୍ ଇନ୍ସପେକ୍ଟର ଜିପ୍‌ରୁ ଓହ୍ଲାଇ ଆସି ଡ୍ରାଇଭରକୁ ପଚାରିଲେ, "କେଉଁଠୁ ଆସିଲ ? ଡ୍ରାଇଭର କହିଲା, "ଆଜ୍ଞା, ପୁରୀରୁ ।"

Source: Author, Digitized by PPRACHIN, SOA

"ଆଚ୍ଛା ଗୋଟେ ନାଲି ମାରୁତି କାର୍ ଏଇ ରାସ୍ତାରେ ଯିବା ଦେଖିଲ ?" ପୋଲିସ୍ ପୁଣି ପ୍ରଶ୍ନ କଲେ । ଡ୍ରାଇଭର କହିଲା, "ହଁ ଆଜ୍ଞା, ଗାଡ଼ିଟା ଆମ ପଛେ ପଛେ କିଛି ବାଟ ଆସିବା ପରେ ବିଷ୍ଣୁପୁର ଛକରୁ ବାଁପଟ ରାସ୍ତାରେ ଚାଲିଗଲା ।" ପୋଲିସ୍ ପଚାରିଲେ, "ଆଚ୍ଛା, ଗାଡ଼ିର ନମ୍ବରଟା କହିପାରିବ ?"



ଡ୍ରାଇଭର କାନମୁଣ୍ଡା କୁଣ୍ଡାଇ କହିଲା, "ସାର୍, ନମ୍ବର ଉପରେ ମୁଁ ନଜର ରଖିପାରିନି । ପୋଲିସ ଇନ୍ସପେକ୍ଟର ବିରକ୍ତ ହେଇ ଚାଲି ଯାଉଥିଲେ, ବିଜୟ ତାଙ୍କୁ ଡାକି କହିଲା, "ଆଜ୍ଞା ଗାଡ଼ିଟାକୁ ବହୁତ ସମୟ ଧରି ମୁଁ ଏ ଅଇନାରେ ଲକ୍ଷ୍ୟ କରୁଥିଲି । ଗାଡ଼ି ଉପରେ ମୋର ବି ସନ୍ଦେହ ଥିଲା । ତେଣୁ ନମ୍ବରଟା ମୋର ପୂରା ମନେ ରହିଯାଇଛି ।"

ଇନ୍ସପେକ୍ଟର କହିଲେ, "ଆଚ୍ଛା..., କହିଲୁ ବାବା – କେତେଥିଲା ନମ୍ବରଟା ?" ବିଜୟ କହିଲା, "ଆଜ୍ଞା, ଗାଡ଼ିର ନମ୍ବରପ୍ଲେଟ୍ ଅକ୍ଷରଗୁଡ଼ିକ ଲେଖାଥିଲା ଇଂରାଜୀରେ କିନ୍ତୁ ସଂଖ୍ୟାଟି ଓଡ଼ିଆ ଅଙ୍କରେ ଲେଖାହୋଇଥିଲା । ନମ୍ବରଟା ହେଲା – ଓ.ଏଚ.ଏମ୍. ଏ-୪୦୩୨ ।"

Source: Author, Digitized by PPRACHIN, SOA

ଇନ୍ସପେକ୍ଟର ବିଜୟକୁ ସାବାସି ଦେଇ ତା' ନାଁ, ଗାଁ ଇତ୍ୟାଦି ପଚାରି ଟିପିନେଲେ । ତା'ପରେ ଗାଡ଼ି ଛାଡ଼ିଦେଲେ ।

କିଛିବାଟ ଆସିବା ପରେ ଡ୍ରାଇଭର ବିଜୟକୁ କହିଲା, ''ତମେ ପିଲାଲୋକ, ଏ ପୁଲିସ ଝମେଲାରେ କାହିଁକି ପଡୁଛ, କହିଲ ?'' ବିଜୁ ପଚାରିଲା, ''କାଇଁ... କ'ଣ ହେଲା କି ? ମୁଁ ନମ୍ବରଟା ଜାଣିଥିଲି ତ କହିଦେଲି । ଏଥିରେ ଝମେଲା ରହିଲା କେଉଁଠି ?''

ବିଜୟର ବାପା କହିଲେ, ''ତୁ ଠିକ୍ କରିଛୁ ବିଜୁ । ଏ ସବୁ କ୍ଷେତ୍ରରେ ପୁଲିସ୍‌କୁ ସାହାଯ୍ୟ କରିବା ଆମର କର୍ତ୍ତବ୍ୟ । ଗାଡ଼ିଟା ନିଶ୍ଚୟ କେଉଁଠି ଦୁର୍ଘଟଣା ଘଟାଇ ଆସିଥିବ । ନଚେତ୍ ଚୋରା ଗାଡ଼ି ହୋଇଥିବ ।''

ଏ ଘଟଣାର ଦୁଇଦିନପରେ ବିଜୟ ଘର ଆଗରେ ଗୋଟେ ପୁଲିସ୍ ଗାଡ଼ି ଆସି ଅଟକିଲା । ସେହି ପୁଲିସ୍ ଇନ୍ସପେକ୍ଟର ଗାଡ଼ିରୁ ଓହ୍ଲାଇ ବିଜୟ ଘରକୁ ଗଲେ । ବିଜୟକୁ ଡାକି କହିଲେ, ''ବହୁତ ଧନ୍ୟବାଦ ବିଜୟ । ତୁମେ ସେଦିନ ନମ୍ବରଟା ନ'କହିଥିଲେ ଗାଡ଼ି ଧରାପଡ଼ନ୍ତାନି । ସେଇଟା ଗୋଟେ ଚୋରା ଗାଡ଼ି ଏବଂ ସେଥିରେ ପ୍ରାୟ ୫୦ଲକ୍ଷ ଟଙ୍କାର ମାଦକଦ୍ରବ୍ୟ ଚାଲାଣ ହେଉଥିଲା । ତୁମ ଉପସ୍ଥିତ ବୁଦ୍ଧି ଯୋଗୁଁ ପୁଲିସ୍ ଗୋଟେ ବଡ଼ ଅପରାଧୀ ଦଳକୁ ଧରିପାରିଲା । ପୁଲିସ୍ ବିଭାଗ ତରଫରୁ ତୁମକୁ କିଛି ପୁରସ୍କାର ମିଳିପାରେ ।'' ଏହା କହି ପୋଲିସ୍ ଇନ୍ସପେକ୍ଟର ଚାଲିଗଲେ । ତା'ପରଦିନ ସମ୍ବାଦପତ୍ରମାନଙ୍କରେ ବଡ଼ ବଡ଼ ଅକ୍ଷରରେ ସମ୍ବାଦଟିଏ ବାହାରିଲା, ଏ.ଏମ୍.ଏଚ୍. ଓ.-୧୩୦୪ ନମ୍ବର ଲେଖାଥିବା ଗୋଟିଏ ମାରୁତି କାର୍‌ରେ ୫୦ଲକ୍ଷ ଟଙ୍କାର ମାଦକଦ୍ରବ୍ୟ ଚୋରାଚାଲାଣ ହେଉଥିବାବେଳେ ୧୩ବର୍ଷର ବାଳକ ବିଜୟ କୁମାରଙ୍କ ଉପସ୍ଥିତ ବୁଦ୍ଧି ଯୋଗୁଁ ଧରା ପଡ଼ିଲା ।

ବିଜୟ ସମ୍ବାଦଟି ପଢ଼ି ଆଶ୍ଚର୍ଯ୍ୟ ହେଲା । କାରଣ ସେ ପୁଲିସ୍‌କୁ ଗାଡ଼ି ନମ୍ବର କହିଥିଲା – ଓ.ଏଚ.ଏମ୍.ଏ.-୪୦୩୨ କିନ୍ତୁ ସମ୍ବାଦରେ ବାହରିଥିଲା – ଏ.ଏମ୍.ଏଚ୍.ଓ.-୧୩୦୪ । ଘଟଣାଟା ବିଜୟ ଯେତେବେଳେ ତା ବାପାଙ୍କୁ କହିଲା, ସେ ମୃଦୁହସି କହିଲେ, ତୁ ଦେବା ନମ୍ବର ଠିକ୍, ଏ ନମ୍ବରଟା ମଧ୍ୟ ଠିକ୍ । ଅଳ୍ପ ଚିନ୍ତା କରିବା ପରେ ପ୍ରକୃତ ଘଟଣା କ'ଣ ବିଜୟ ବୁଝିଗଲା । ପିଲେ, ତୁମେମାନେ ମଧ୍ୟ ଏ ନମ୍ବର ରହସ୍ୟଟା ବୁଝିପାରିଲଟି ?



Source: Author, Digitized by PPRACHIN, SOA

# ।। କାହାର ଯୁକ୍ତି ଠିକ୍ ।।

ସିନୁ ଭଲ ନମ୍ବର ରଖି ପଞ୍ଚମ ଶ୍ରେଣୀ ପାସ୍ କଲା । ଷଷ୍ଠରେ ନାଁ ଲେଖାଇବା ପୂର୍ବରୁ ତା ବାପା ତା'ପାଇଁ ଗୋଟେ ନୂଆ ସାଇକେଲ୍ କିଣି ଆଣିଲେ । ହାଇସ୍କୁଲ ତାଙ୍କ ଗାଁଠାରୁ ପ୍ରାୟ ପାଞ୍ଚ କିଲୋମିଟର ଦୂର । ଯିବା ଆସିବା ପାଇଁ ସିନୁର ସାଇକେଲ୍‌ଟିଏ ନିହାତି ଦରକାର ଥିଲା । ଯାହା ହେଉ ମିଳିଗଲା । ନାଲି ରଙ୍ଗର ହିରୋ ବାଇଶ ଇଞ୍ଚିଆ ସାଇକେଲ୍‌ଟିକୁ ଦେଖି ସିନୁର ଖୁସି କହିଲେ ନ'ସରେ ।

ପରଦିନ ସକାଳୁ ସାଇକେଲ୍ ଧରି ସେ ସ୍କୁଲ୍‌କୁ ବାହାରିଲା । ଘରୁ ଗୋଡ଼କାଢ଼ି ଦୁଇପାହୁଣ୍ଡ ଯାଇଛି କି ନାହିଁ ହଠାତ୍ କାହା ଡାକରେ ଅଟକିଗଲା ସେ । ପଛକୁ ଚାହିଁଲା, କେହି ନାହାନ୍ତି । ପୁଣି ଶୁଭିଲା, ''ସିନୁବାବୁ, ତମେ ମତେ ଚଳାଇ ଶିଖିଚ଼ଟି ?''

ସିନୁ ଦେଖିଲା । ଆଉ କେହି ନୁହଁ, ତା ନୂଆ ସାଇକେଲ୍ ତାକୁ ପଚାରୁଛି । ପ୍ରଥମେ ତାକୁ ଟିକିଏ ଆଶ୍ଚର୍ଯ୍ୟ ଲାଗିଲା । ତା'ପରେ ସେ କହିଲା, ''ହଁ ଭାଇ, ମୁଁ ତୁମକୁ ଭଲରୂପେ ଚଳାଇ ଜାଣେ । ତମର ସନ୍ଦେହ କାହିଁକି ହେଉଛି ?''

ସାଇକେଲ୍ କହିଲା, ''କଥା କଣ କି, ତୁମପରି ଛୋଟ ପିଲାମାନେ ସାଇକେଲ୍ ନୂଆ ଶିଖିଥାନ୍ତି । ନୂଆ ସାଇକେଲ୍‌ଟେ ପାଇଲେ ଛେଚା କୁଟା କରି ଅବସ୍ଥା ବାରଣ୍ଡା ଦି'କଡ଼ା କରି ଦିଅନ୍ତି । ନିଜେ ବି କଚଡ଼ା ଖାଆନ୍ତି । ସେଥିପାଇଁ ପଚାରୁଥିଲି ।'' ସିନୁ କହିଲା, ''ଆରେ ଭାଇ, ମୁଁ ନୂଆ ଶିଖାଳି ନୁହଁ, ତୁମେ ତ ଛୋଟ, ତୁମ ବଡ଼ଭାଇ ଚବିଶି ଇଞ୍ଚିଆ ସାଇକେଲ୍ ମଧ୍ୟ ମୁଁ ଆରାମରେ ଚଳାଇପାରେ । ବୁଝିଲ ?''

ସାଇକେଲ୍ କହିଲା, ତା'ହେଲେ ତ ମୋ ଚିନ୍ତାଗଲା । ଆଚ୍ଛା ସିନୁବାବୁ, ତୁମେ ଏବେ ଜାତୀୟ ରାଜପଥ ଦେଇ ଯିବ ! ଟ୍ରାଫିକ୍ ନିୟମ ସବୁ ଜାଣିଛ ଟି ?''

ସିନୁ କହିଲା, ''ହଁରେ ଭାଇ ଜାଣିଛି । ଶୁଣ, ଆମେ ସବୁବେଳେ ରାସ୍ତାର ବାମ ପାଖରେ ଯିବା । ଗୋଟିଏ ପାଖରୁ ଅନ୍ୟ ପାଖକୁ ଯିବାକୁ ହେଲେ ରାସ୍ତାର ଦୁଇ ପଟକୁ ଦେଖି ରାସ୍ତା ପାର କରିବା । ଆଗପଟୁ ନାଲିବତି ଦେଖିଲେ ସତର୍କ ହେଇଯିବା ।

Source: Author, Digitized by PPRACHIN, SOA

କୌଣସି ଦ୍ରୁତଗାମୀ ଯାନବାହନ ପଛ ପାଖରୁ ଆସୁଥିଲେ ତାକୁ ପ୍ରଥମେ ରାସ୍ତା ଛାଡ଼ିଦେବା । କୌଣସି ଛକ ପାର ହେବାବେଳେ ଟ୍ରାଫିକ୍ ପୋଲିସ୍‌ର ସଙ୍କେତ ମାନିବା । ଏମିତି ଅନେକ ନିୟମ ଅଛି । ତୁମେ ଡରିବା ଦରକାର ନାହିଁ । ମୁଁ ତମକୁ ନିରାପଦରେ ସ୍କୁଲ୍‌କୁ ନେଇ ପୁଣି ଫେରାଇ ଆଣିବି । ଡେରି ହେଲାଣି, ଚାଲ ଆମେ ଏବେ ଯିବା । ବାଟ ଚାଲୁଚାଲୁ ଗପ କରିବା ।''

କିଛି ବାଟ ଯିବାପରେ ସିନୁ ପଚାରିଲା, ''ଆଚ୍ଛା ସାଇକେଲ୍ ଭାଇ, ତୁମେ ତୁମର ଜନ୍ମ କାହାଣୀ ବିଷୟରେ ଜାଣିଛ, ପ୍ରଥମେ ତମକୁ କିଏ ଉଦ୍ଭାବନ କରିଥିଲେ । ଧୀରେ ଧୀରେ ତୁମ ପୂର୍ବପୁରୁଷମାନଙ୍କର କ୍ରମବିକାଶ କେମିତି ହେଲା ଇତ୍ୟାଦି ?''

ସାଇକେଲ୍ କହିଲା, ''ନା' ସିନୁଭାଇ, ମୋର ଏତେ ବୁଦ୍ଧି କାହିଁ ? ତୁମେ ସିନା ଇତିହାସ, ବିଜ୍ଞାନ ଆଦି ପଢୁଛ । ଆମ ବିଷୟରେ ଅନେକ କଥା ଜାଣିଥିବ ।''

ସିନୁ କହିଲା, ''ହଁ ଜାଣିଛି, ଶୁଣ, ୧୮୧୭ ମସିହାରେ ତୁମର ଜନ୍ମ । 'ବେରେନ୍‌ବ୍ରାନ୍ ଡ୍ରାଇସ୍ ନାମକ ଜର୍ମାନର ଜଣେ କାଠ ମିସ୍ତ୍ରୀ ପ୍ରଥମେ ତୁମକୁ କାଠରେ ତିଆରି କରିଥିଲେ । ତାଙ୍କରି ନାଁ ଅନୁସାରେ ତୁମକୁ ଲୋକେ ଡାକୁଥିଲେ ଡ୍ରାଇସନ୍ ବୋଲି । ସେତେବେଳେ ତୁମ ଦେହରେ ପେଡ଼େଲ ଲାଗୁନଥିଲା ଏବଂ ଚକାଗୁଡ଼ିକ କାଠର ଥିଲା । ତେଣୁ ଚଲାଇବା ଲୋକଙ୍କ ବହୁତ ପରିଶ୍ରମ କରିବାକୁ ପଡୁଥିଲା । ମ୍ୟାକମିଲାନ ନାମକ ଜଣେ କାରିଗର ତୁମ ଶାରୀରିକ ଗଠନରେ ଆଉ ଟିକିଏ ଉନ୍ନତି ଆଣିଥିଲେ । ତୁମ ଦେହରେ ପେଡ଼ାଲ୍ ଖଞ୍ଜା ହେଲା, ତା'ପରେ ତୁମର ଲୋକପ୍ରିୟତା ବଢ଼ିଲା । ୧୮୬୫ ମସିହାରେ ଫ୍ରାନସ୍‌ର 'ଲାଲେମେଣ୍ଟ' ନାମକ ଜଣେ ବ୍ୟକ୍ତି ଏଥିରେ ଆଉ କିଛି ପରିବର୍ତ୍ତନ ଆଣିଲେ । କାଠ ଚକ ସ୍ଥାନରେ ସେ ଲୁହା ଚକ ଲଗାଇଲେ । ଆଗ ଚକ ସହିତ ପେଡ଼ାଲ ସଂଯୋଗ କଲେ । ହ୍ୟାଣ୍ଡେଲ ଲଗାଇଲେ । ତା'ପରେ ତୁମ ଉପରେ ରୀତିମତ ଗବେଷଣା ଚାଲିଲା । କମ୍ ପରିଶ୍ରମରେ କେମିତି ତୁମକୁ କାମରେ ଲଗାଯାଇ ପାରିବ ଲୋକେ ଚିନ୍ତା କଲେ । ତା'ପରେ ତୁମର ଆଗ ଚକ ବଡ଼ ଏବଂ ପଛଚକ ଛୋଟ କରାହେଲା । ଏମିତି କିଛି କାଳ ଚାଲିଲା । କିନ୍ତୁ ଏହାଦ୍ୱାରା ଲୋକେ ତୁମକୁ ନିୟନ୍ତ୍ରଣ କରି ନପାରି କଚଡ଼ା ଖାଇଲେ । ଖଣ୍ଡିଆଖାବରା ହେଲେ । କିଛିଦିନ ପରେ ପୁଣି ତୁମ ରୂପ ବଦଳିଲା । ଉଭୟ ଚକ ସମାନ ହେଲା । ପେଡ଼ାଲ୍ ପୁଣି ପଛ ଚକରେ ଖଞ୍ଜାହେଲା । ଲୁହା ଚକରେ କାଠ ରିଙ୍ଗ୍ ଲାଗିଲା । ସତ କହିବାକୁ ଗଲେ ତୁମେ ଆଧୁନିକ ରୂପରେ ବଜାରରେ ଦେଖାଦେଲ ୧୮୯୦ ମସିହାରେ । ପ୍ରଥମେ କାଠଚକ

Source: Author, Digitized by PPRACHIN, SOA

ଏବଂ ପରେ ଲୁହାଚକରେ ଅନେକ ବର୍ଷ ଚାଲିବା ପରେ ତୁମ ଦେହରେ ରବର ଟାୟାର ଓ ଟ୍ୟୁବ୍ ଖଞ୍ଜା ହେଲା । ପେଡ଼ାଲ୍ ସହିତ ଚେନ୍ ଖଞ୍ଜା ହେଲା । ଶୂନ୍ୟେ ଶୂନ୍ୟେ ଦୁଇଟି ଚକ ଦ୍ୱାରା ଗଡୁଥିବାରୁ ହେତୁ ଲୋକେ ତୁମକୁ ଶୂନଗାଡ଼ି କହୁଥିଲେ । ମୋଟାମୋଟି ଉପରେ ଏ ତୁମର ଜନ୍ମ ଏବଂ କ୍ରମବିକାଶର କାହାଣୀ ।

ସାଇକେଲ୍ କହିଲା, ବାଃ....ସିନୁଭାଇ, ତମେ ତ ମୋ' ବିଷୟରେ ଅନେକ କଥା ଜାଣିଛ । ସିନୁ ସ୍କୁଲ୍ ପାଖରେ ପହଞ୍ଚି ଯାଇଥିଲା । ସେ ସାଇକେଲ୍‌କୁ ଷ୍ଟାଣ୍ଡରେ ରଖି ତା ଶ୍ରେଣୀକୁ ଗଲା । ଛୁଟି ହେବାପରେ ପୁଣି ଦୁହେଁ, ଗପସପ ହେଇ ଘରକୁ ଫେରିଲେ । ସିନୁ ନିଜ ପଢ଼ାଘର କୋଣେ ସାଇକେଲ୍‌କୁ ପୋଛାପୋଛି କରି ଯତ୍ନରେ ରଖିଲା । ସନ୍ଧ୍ୟା ପଢ଼ା ସାରିଲା । ଖାଇ ପିଇ ଶୋଇବାକୁ ଗଲା । ହଠାତ୍ ରାତିରେ



କାହାର କଥାବାର୍ତ୍ତା ଶୁଣି ସିନୁର ନିଦ ଭାଙ୍ଗିଗଲା । ସେ କାନେଇଲା । ସାଇକେଲ୍ ଦୁଇଚକା ଭିତରେ ଯୁକ୍ତିତର୍କ ଚାଲିଛି । ପଛଚକା କହୁଥିଲା, ଆରେ ଭାଇ, ମୋ ପରିଶ୍ରମ ତୋଠୁ କେତେ ଗୁଣ ଅଧିକ ତୁ କୁଆଡୁ ଜାଣିବୁ ? ତୋ ଦେହରେ ତ କିଛି ଖଞ୍ଜା ହେଇନି । ମୋ ଦେହରେ ଫ୍ରିହ୍ୱିଲ, ଚେନ୍ ଇତ୍ୟାଦି ଲାଗିଛି । ଚାଳକ ସବୁ ଶକ୍ତି ମୋ ଉପରେ ପକାଏ । ତେଣୁ ପ୍ରଥମେ ମୁଁ ଗଡ଼େ ତେଣୁ ତୋ ଅପେକ୍ଷା ମୋତେ ଅଧିକ ରାସ୍ତା

Source: Author, Digitized by PPRACHIN, SOA

ଗଡ଼ିବାକୁ ପଡ଼େ । ଆଗ ଚକ ଯୁକ୍ତି କଲା – କାଇଁକି ଫୁଟାଣି ମାରୁଛୁ କହିଲୁ ? ମୁଁ ତୋ ଆଗରେ ଅଛି, ତେଣୁ ବେଶି ରାସ୍ତା ତୋତେ ନୁହଁ ବରଂ ମୋତେ ଗଡ଼ିବାକୁ ପଡୁଛି । ତା'ଛଡ଼ା ମୁଁ ଆଗେ ଆଗେ ରାସ୍ତା ଦେଖାଉଛି ବୋଲି ସିନା ତୁ ଏକମୁହାଁ ମାଡ଼ି ଯାଉଛୁ ।

ଦୁଇ ଚକର ଯୁକ୍ତିତର୍କ ଶୁଣି ସିନୁ ଉଠିଲା । ପାଖକୁ ଯାଇ କହିଲା, ଭାଇ ରାତି ଅଧରେ ତୁମେ ଦୁହେଁ କିଆଁ ନିଜ ଭିତରେ କଳି କରୁଛ କହିଲ । ତୁମ ଦୁହିଁଙ୍କ ଆକାର ତ ଏକା । ଗତି ମଧ୍ୟ ସମାନ । ଏକା ସାଙ୍ଗରେ ଦୁହେଁ ଗୋଟିଏ ସ୍ଥାନରୁ ବାହାର ହୋଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚୁଛ । ପୁଣି କମ୍ ଅଧିକ ଗଡ଼ିବା ପ୍ରଶ୍ନ ଉଠୁଛି କୁଆଡୁ କହିଲ । ମୋ ହିସାବରେ କେହି କମ୍ କି ବେଶି ଗଡୁନ । ଉଭୟେ ସମାନ ରାସ୍ତା ଗଡୁଛ । ଏବେ ଚୁପ୍‌ଚାପ୍ ଶୋଇପଡ଼ ।

ସିନୁର ଆକଟ ଶୁଣି ଦୁଇ ଚକ ଚୁପ୍ ହୋଇଗଲେ । କିନ୍ତୁ ସେମାନଙ୍କର ମନ ମାନୁ ନଥିଲା । ଆଗ ଚକ ଭାବୁଥିଲା ମୁଁ ଆଗରେ ଅଛି, ବାଟ ଦେଖାଉଛି,ତେଣୁ ପଛ ଚକ ଅପେକ୍ଷା ବେଶି ଗଡୁଛି । ପଛ ଚକ ଭାବୁଥିଲା ଦେହରେ ଚେନ୍ ଏବଂ ପେଡ଼ାଲ୍ ଖଞ୍ଜା ହେଇଚି, ଚାଳକ ପ୍ରଥମେ ମୋ ଉପରେ ଜୋର୍ ଦେଇ ସାଇକେଲ୍ ଗଡ଼ାଉଛନ୍ତି । ତେଣୁ ଆଗ ଚକ ଅପେକ୍ଷା ମୁଁ ଅଧିକା ଗଡୁଛି । ସିନୁ ଭାବନାରେ ଉଭୟଙ୍କ ଆକାର ସମାନ, ଗତି ସମାନ ଏବଂ ଲକ୍ଷ୍ୟ ଏକ । ତେଣୁ ଗଡ଼ିବା ମଧ୍ୟ ନିଶ୍ଚୟ ସମାନ । ପିଲାମାନେ, ତୁମେ କହିଲ ଦେଖି ଏ ତିନିଙ୍କ ଭିତରୁ କାହାର ଯୁକ୍ତି ଠିକ୍ ବୋଲି ଭାବୁଛ ?



Source: Author, Digitized by PPRACHIN, SOA

# ।। କୁହୁକ ନମ୍ବର ।।

ପିଲାମାନେ, ଆମେ ପରିବାର ସହିତ ଯଦି କେଉଁ ଦୂର ଜାଗାକୁ ବୁଲିବାକୁ ଯାଉ, ପ୍ରାୟ ଗାଡ଼ି ମଟରରେ ଯାଇଥାଉ । ନିଜ ଗାଡ଼ିଥିଲେ କିଛି ଅସୁବିଧା ନାହିଁ । ଯଦି ଆମେ ବସ୍ କିମ୍ବା ଭଡ଼ାଗାଡ଼ିରେ ଯିବା, ତା'ହେଲେ ଗୋଟେ ସାଧାରଣ କଥା ସବୁବେଳେ ମନେ ରଖିବା ଦରକାର । ତୁମେ ଯେଉଁ ଭଡ଼ା ଟାକ୍ସି, କାର୍, କିମ୍ବା ଅଟୋରେ ଯାତ୍ରା କରୁଛ, ସବୁବେଳେ ତା'ନମ୍ବର ଟିପିରଖିବ । ଆଜି କାଲି ଗାଡ଼ି ନମ୍ବର ଖୁବ୍ ଲମ୍ବା ହେଲାଣି । ମନେ ରଖିବା ସହଜ ନୁହେଁ । ତେଣୁ ପକେଟ୍ ଟିପା ଖାତାରେ ଟିପି ନେବ ।

ମନେକର ତୁମେ କୌଣସି ଯାତ୍ରା କିମ୍ବା ଦର୍ଶନୀୟ ସ୍ଥାନକୁ ବୁଲି ଯାଇଛ । ସେପରି ସ୍ଥାନମାନଙ୍କରେ ଭିଡ଼ ଥିଲେ ଚାରିଚକିଆ ଯାନ ଭିତରକୁ ଛଡ଼ା ଯାଏନି । ଦୂରରେ ଗାଡ଼ି ରଖି ଚାଲି ଯିବାକୁ ପଡ଼ିଥାଏ । ତୁମ ଗାଡ଼ି ପରି ଆହୁରି ଅନେକ ଗାଡ଼ି ମଧ୍ୟ ସେଠାରେ ଥାଇପାରେ । ତୁମେ ଯଦି ନିଜ ଗାଡ଼ିର ନମ୍ବର ଜାଣିଥିବ, ଭିଡ଼ ଭିତରେ ଗାଡ଼ିଟିକୁ ଚିହ୍ନିପାରିବ । ନ'ଚେତ୍ ହଇରାଣ ହେବା ସାର ହେବ ।

ଗତ ଜାନୁଆରୀ ପହିଲା ଦିନ 'ନନ୍ଦନକାନନ' ଠାରେ ଏମିତି ଗୋଟେ କୌତୁହଳ ପୂର୍ଣ୍ଣ ଘଟଣା ଘଟିଥିଲା । ଏଥର ନୂଆ ବର୍ଷରେ ନନ୍ଦନକାନନ ଠାରେ ନାହିଁ ନଥିବା ଭିଡ଼ ହେଇଥିଲା । ଯାତ୍ରୀ ସଂଖ୍ୟା ଯେତିକି ଗାଡ଼ିମଟର ସଂଖ୍ୟା ମଧ୍ୟ ପ୍ରାୟ ସେତିକି କହିଲେ ଚଳେ । ଭିଡ଼ ନିୟନ୍ତ୍ରଣ କରିବା ପାଇଁ ଟ୍ରାଫିକ୍ ପୁଲିସ୍ ତରଫରୁ କଡ଼ା ପଦକ୍ଷେପ ନିଆଯାଉଥିଲା । କୌଣସି ଗାଡ଼ିକୁ 'ନନ୍ଦନ କାନନ' ଗେଟ୍ ପରିସର ପର୍ଯ୍ୟନ୍ତ ଛଡ଼ା ଯାଉ ନଥିଲା । ଗେଟ୍ ପାଖରୁ ପ୍ରାୟ ଅଧ କି.ମି. ଦୂରରେ ଥିବା ଗୋଟେ ପଡ଼ିଆରେ ଗାଡ଼ି ରହୁଥିଲା । ଲୋକେ ସେଠାରୁ ଚାଲିକରି ଯାଉଥିଲେ ।

ସେଦିନ ଆମେ ମଧ୍ୟ ଟାକ୍ସି ଭଡ଼ାକରି ସପରିବାର ନନ୍ଦନକାନନ ଯାଇଥିଲୁ । ଗାଡ଼ି ଆମର ସେଇ ପଡ଼ିଆରେ ରହିଲା । ବୁଲାବୁଲି ସାରି ସନ୍ଧ୍ୟା ପାଞ୍ଚଟାରେ ଆମେ

Source: Author, Digitized by PPRACHIN, SOA

ଫେରିଲୁ ଗାଡ଼ିପାଖକୁ । ଦେଖିଲି ଧାଡ଼ିକି ଧାଡ଼ି ଅସଂଖ୍ୟ ଗାଡ଼ି ଠିଆ ହୋଇଛି । ମୁଁ ଗାଡ଼ି ନମ୍ବର ଟିପି ରଖିଥିଲି । ତେଣୁ ବେଶି ଖୋଜିବାକୁ ପଡ଼ିଲାନି ।

ଦେଖିଲି, ଜଣେ ଭଦ୍ରଲୋକ ଅସ୍ତବ୍ୟସ୍ତ ହୋଇ ତାଙ୍କ ଗାଡ଼ିଟିକୁ ଖୋଜୁଛନ୍ତି । ସାଙ୍ଗରେ ତାଙ୍କର ସ୍ତ୍ରୀ ପିଲାଛୁଆ ପଲେ । ତାଙ୍କ ସାଙ୍ଗରେ ଦଶ/ବାର ବର୍ଷର ପୁଅଟିଏ



ମଧ୍ୟ କାଗଜ ଖଣ୍ଡେ ଧରି ଏପଟ ସେପଟ ହେଉଛି । ସେମାନଙ୍କ ବ୍ୟସ୍ତତା ଦେଖି ମୁଁ ଭଦ୍ରଲୋକଙ୍କୁ ପଚାରିଲି, ‘‘ଆଜ୍ଞା ଗାଡ଼ି ପାଉନାହାନ୍ତି କି ?’’

Source: Author, Digitized by PPRACHIN, SOA

ସେ କହିଲେ, ''ହଁ ଆଜ୍ଞା । ଠିକ୍ ଆପଣଙ୍କ ଗାଡ଼ି ପରି, ଏଇ ରଙ୍ଗ, ଏଇ ମଡ଼େଲ୍ ଗାଡ଼ି, ଭଡ଼ାରେ ଆଣିଥିଲୁ । ଏଇ ପାଖରେ ହିଁ ଛାଡ଼ି ଯାଇଥିଲୁ । ଗାଡ଼ି ପାଉନୁ କି ଡ୍ରାଇଭରକୁ ପାଉନୁ ।

ମୁଁ ପଚାରିଲି, ''ଗାଡ଼ି ନମ୍ବର ଟିପି ନାହାନ୍ତି ?''

ସେ କହିଲେ, ''ନା ଆଜ୍ଞା, ନମ୍ବର ଟିପିବାକୁ ଭୁଲିଯାଇଥିଲି । ହେଲେ ମୋ ପୁଅକୁ ତା ସାଙ୍ଗ ଖଣ୍ଡେ କାଗଜରେ ଏଣୁ ତେଣୁ କଣ ଲେଖିକରି ଦେଇଛି । ସେଇଟା ଦେଖିଲେ ମୋ ମୁଣ୍ଡ କିଛି କାମ କରୁନି ।

ତା' ପରେ ସେ ପିଲାଟି କହିଲା, ''ମଉସା, ଆମେ ଯାହାର ଗାଡ଼ି ଭଡ଼ାରେ ଆଣିଛୁ ତାଙ୍କ ପୁଅ 'ସିପୁ' ମୋ ସାଙ୍ଗ । କାଲି ମୁଁ ତାକୁ ତାଙ୍କ ଗାଡ଼ିର ନମ୍ବରଟା ମାଗିଥିଲି । ସେ ଖଣ୍ଡେ କାଗଜରେ କିଛି ଲେଖି ମୋ ପକେଟ୍‌ରେ ପୂରାଇ ଦେଲା । ମୁଁ ଭାବିଲି ନମ୍ବର ଲେଖି ଦେଇଥିବ । ତେଣୁ ଦେଖିଲି ନାହିଁ । ଏବେ ଦେଖେତ ଏ ଗାଡ଼ିନମ୍ବର ନୁହେଁ ଗୋଟେ ଅଙ୍କ 'ପ୍ରହେଳିକା' ।

ମୁଁ ପିଲାଟି ହାତରୁ କାଗଜ ଖଣ୍ଡିକ ଆଣି ଦେଖିଲି । ଲେଖାଥିଲା, ଆମ ଗାଡ଼ି ନମ୍ବର OR 06 B ତାପରେ ଚାରିଅଙ୍କ ବିଶିଷ୍ଟ ଗୋଟିଏ ସଂଖ୍ୟା ।

ସେ ସଂଖ୍ୟାର ପ୍ରଥମ ଓ ଦ୍ୱିତୀୟ ଅଙ୍କର ଗୁଣଫଳ = ଶୂନ

ଦ୍ୱିତୀୟ ଓ ତୃତୀୟ ଅଙ୍କର ଯୋଗଫଳ = ଶୂନ

ତୃତୀୟ ଅଙ୍କକୁ ଚତୁର୍ଥ ଅଙ୍କରେ ଭାଗ କଲେ ଭାଗଫଳ = ଶୂନ

ଚତୁର୍ଥ ଓ ପ୍ରଥମ ଅଙ୍କର ବିୟୋଗଫଳ = ଶୂନ

ଚାରୋଟି ଯାକ ସଂଖ୍ୟାର ଯୋଗଫଳରୁ ଦୁଇ ବିୟୋଗ କଲେ = ଶୂନ

ପ୍ରହେଳିଟି ପଢ଼ି ଗାଡ଼ିର ନମ୍ବର ଜାଣିବା ପାଇଁ ମୋ ମସ୍ତିଷ୍କକୁ ଟିକିଏ କସରତ କରିବାକୁ ପଡ଼ିଲା । ମୁଁ ସଠିକ୍ ନମ୍ବରଟା କହିବାପରେ ସେମାନେ ଗାଡ଼ି ପାଇଗଲେ ।

ପିଲାମାନେ, ତୁମେମାନେ ମଧ୍ୟ ଏ ପହେଳି ଭିତରୁ ଗାଡ଼ିନମ୍ବରଟା ନିଶ୍ଚୟ ପାଇଯିବ; କିନ୍ତୁ ସେଥିପାଇଁ ତୁମ ମସ୍ତିଷ୍କକୁ କେତେ ସମୟ କସରତ କରିବାକୁ ପଡ଼ିଲା କହିବ ।



Source: Author, Digitized by PPRACHIN, SOA

# ।। ଗୁପ୍ତଚାବି ।।

ଜଗବନ୍ଧୁ ବାବୁ ମୃତ୍ୟୁ ଶଯ୍ୟାରେ ପଡ଼ିଥିଲେ । ତାଙ୍କୁ ଘେରି ବସିଥିଲେ ତାଙ୍କର ତିନିପୁଅ ବୋହୂ ଓ ଏକମାତ୍ର ନାତି ବିଜୁ । ଜଗବନ୍ଧୁ ବାବୁ ଥିଲେ ଜଣେ ସ୍ୱଳ୍ପ ବେତନଭୋଗୀ ସରକାରୀ କର୍ମଚାରୀ । ତେଣୁ ପିଲାମାନଙ୍କ ପାଇଁ ବେଶି କିଛି ସଞ୍ଚୟ କରି ପାରିନଥିଲେ । ବାପା ଗୋସେଇଁ ବାପାଙ୍କ ଅମଳରୁ ଯାହା ଅଳ୍ପ କିଛି ଜମିବାଡ଼ି ଥିଲା, ଆଗରୁ ହିଁ ସେ ପୁଅମାନଙ୍କ ଭିତରେ ବାଣ୍ଟି ଦେଇଥିଲେ । ଘରର ଆସବାବପତ୍ର ବି ବଣ୍ଟା ସରିଥିଲା । ଶେଷ ପର୍ଯ୍ୟନ୍ତ ଅବଣ୍ଟା ହୋଇ ରହିଥିଲା ଗୋଟିଏ ଜିନିଷ, ତାହା ହେଲା ଗୋଟେ ଚାବିବନ୍ଦ ଆଟାଚି ।

ଆଟାଚି ଭିତରେ କଣ ଅଛି କେହି ଜାଣିନଥିଲେ ; କିନ୍ତୁ ଏକଥା ସତଯେ, ସେଥିରେ ପଡ଼ିଥିଲା ଗୋଟେ ବିଚିତ୍ର ଧରଣର ଗୁପ୍ତଚାବି । ଆଟାଚିର ହ୍ୟାଣ୍ଡେଲ ପାଖରେ ତିନୋଟି ଛୋଟ ଛୋଟ ଚକ୍ରୀ ଏବଂ ପ୍ରତି ଚକ୍ରୀରେର ଶୂନରୁ ନ'ପର୍ଯ୍ୟନ୍ତ ଅଙ୍କ ଲେଖା ହେଇଥିଲା । ଚକ୍ରୀ-ତିନୋଟିକୁ ଘୁରାଇ ଗୋଟେ ନିର୍ଦ୍ଦିଷ୍ଟ ସଂଖ୍ୟା ତିଆରି କଲେ ଆଟାଚି ଖୋଲୁଥିଲା ଏବଂ ବନ୍ଦ ହେଉଥିଲା । ଏହି ଗୁପ୍ତ ସଂଖ୍ୟାଟିକୁ ଜାଣିଥିଲେ କେବଳ ଜଗବନ୍ଧୁ ବାବୁ ।

ଆଟାଚିଟା ମୁମୂର୍ଷ ଜଗବନ୍ଧୁବାବୁଙ୍କ ମୁଣ୍ଡ ପାଖରେ ରଖା ହେଇଥିଲା । ପରିବାରର ପ୍ରତ୍ୟେକଙ୍କ କୌତୁହଳୀ ଦୃଷ୍ଟି, ସେଇ ଆଟାଚି ଉପରେ ।

ବଡ଼ ପୁଅ କହିଲା, ବାପା ଆମକୁ ସବୁ ସମ୍ପତ୍ତି ବାଣ୍ଟିଦେଲେ । ହେଲେ ଏ ଆଟାଚି ଭିତରେ କଣ ଅଛି ଆମେ ତ ଜାଣି ପାରିଲେନି ।''

ମଝିଆଁ ପୁଅ କହିଲା, ''କେମିତି ଜାଣିବା..., ସେ କଣ ଆଟାଚି ଖୋଲି ତା'ଭିତରେ ସାପ୍ ଅଛି କି ବେଙ୍ଗ ଅଛି ଆମକୁ କେବେ ଦେଖାଇଛନ୍ତି, ନା ତା' ସିକ୍ରେଟ୍‌ନମ୍ବର କହିଛନ୍ତି ?''

Source: Author, Digitized by PPRACHIN, SOA

ସାନ ପୁଅ କହିଲା, "ସାପ ବେଙ୍ଗ ନୁହଁ ଭାଇ, ତା ଭିତରେ ନିଶ୍ଚୟ କିଛି ଗୁପ୍ତଧନ ଥିବ । ଜୀବନସାରା ଚାକିରି କରି ଆମପାଇଁ ସେ କିଛିତ ସଞ୍ଚି ନାହାନ୍ତି । ସବୁ ଧନ ବୋଧେ ୟାରି ଭିତରେ ଅଛି ।



ପୁଅ ମାନଙ୍କ ଆଲୋଚନାରେ ଭାଗନେଇ ତିନିବୋହୂ ମଧ ଫୁସ୍‌ଫାସ୍ ଆରମ୍ଭ କରିଦେଲେ । ବଡ଼ କହିଲା, ରାତି ଅଧରେ ସେ ବାପାଙ୍କ କୋଠରିରୁ ଝଣ୍ ଝାଣ୍ ଠଣ୍ ଠାଣ୍ ଶବ୍ଦ ଅନେକଥର ଶୁଣିଛି । ମଝିଆଣୀ କହିଲା, ତାଭିତରେ ଥାକ ଥାକ ସୁନାଟଙ୍କା ଥିବାର ସେ କୁଆଡ଼େ ନିଜ ଆଖିରେ ଦେଖିଛି । ସାନ ଯାହା କହିଲା ସେଥିରେ ସମସ୍ତେ ଚମକି ପଡ଼ିଲେ । ମୁଁ ଦିନେ ସଞ୍ଜଦିଆ ବେଳକୁ କଣ ଗୋଟେ କାମ ପଡ଼ିଲା ଯେ ବାପାଙ୍କ କୋଠରି ଭିତରକୁ ହଠାତ୍ ପଶିଗଲି । ଯାହା ଦେଖିଲି ଆଖିକୁ ବିଶ୍ୱାସ କରିପାରିଲିନି । ଆଟାଚି ଭିତରୁ ଗୋଟେ ଉଜ୍ଜ୍ୱଳ ଆଲୋକ ବାହାରି କୋଠରିଟା ଦିନ ପରି ଝଟକୁ ଥିଲା । ମୁଁ ଆଶ୍ଚର୍ଯ୍ୟରେ ପଥର ପରି ଠିଆ ହୋଇଗଲି । ମୋତେ ଦେଖି ବାପା ହଠାତ୍ ଆଟାଚିଟା ବନ୍ଦ କରିଦେଲେ । କୋଠରିଟା ପୁଣି ଅନ୍ଧାର ହେଇଗଲା ।"

Source: Author, Digitized by PPRACHIN, SOA

ତା ହେଲେ ଆଟାଚି଼ ଭିତରେ କଣ ହିରା, ମୋତି, ମାଣିକ ଅଛି ? ସମସ୍ତଙ୍କ ମୁହଁରେ ବିସ୍ମୟ !

''ସେ ଯାହା ଥାଉ, ବାପାଙ୍କ ଅନ୍ତେ ସେ ସବୁର ହକଦାର'ତ ଆମେ ତିନିହେଁ । ବେଳଥାଉ ଥାଉ ଯଦି ଆମେ ଯାର ଖୋଲିବା ସୂତ୍ରଟା ନଜାଣିବା ଏଡ଼େ ଦାମିକା ଆଟାଚି଼ଟାକୁ ଶେଷରେ ଭାଙ୍ଗିବାକୁ ପଡ଼ିବ । ଭିତରେ ଯଦି କିଛି ମୂଲ୍ୟବାନ ଜିନିଷ ଥାଏ ଅଯଥାରେ ନଷ୍ଟ ହେଇଯିବ ସିନା ।'' ବଡ଼ ପୁଅ ମତ ଦେଲା ।

ଜଗବନ୍ଧୁ ବାବୁ ତେଣେ ମଲାପରି ପଡ଼ିଥାନ୍ତି ଶେଯରେ । ହାତଗୋଡ଼ ଆଉ ଚଳୁନଥାଏ । ଆଖି ଆଗରେ ଅନ୍ଧାର ଘୋଟିଆସୁଥାଏ । କିଛି କହିବାକୁ ଚେଷ୍ଟା କରିବି ସେ କହି ପାରୁ ନଥିଲେ । କେବଳ ନିଃଶ୍ୱାସ ପ୍ରଶ୍ୱାସ ଯାହା ଟିକେ ଚାଲୁଥିଲା ।

ପିଲାମାନଙ୍କ ଆଲୋଚନାରୁ ସେ ବୋଧହୁଏ କିଛି ବୁଝିପାରିଲେ । ବଡ଼ କଷ୍ଟରେ ହାତ ଉଠାଇ ସେ ତକିଆ ଆଡ଼କୁ ଆଙ୍ଗଠି ଦେଖାଇଲେ । ବଡ଼ କହିଲା, ''ବାପା ତକିଆ ତଳେ କିଛି ଅଛି ବୋଲି ଠାରୁଛନ୍ତି । ଦେଖିଲ । ସାନପୁଅ ସଙ୍ଗେ ସଙ୍ଗେ ତକିଆ ତଳଟା ଅଣ୍ଡାଳି ପକାଇଲା । ପାଇଲା ଖଣ୍ଡେ ଲୋଚାକୋଚା କାଗଜ । ଖୋଲି ଦେଖିଲା, ଆଶ୍ଚର୍ଯ୍ୟ ! ସେଥିରେ ଗୋଟେ ଚାବିକାଠିର ଚିତ୍ର ଅଛି । ଚାବିକାଠିର ଗୋଲାକାର ଅଂଶକୁ ଭାଗ ଭାଗ କରି ସେଠାରେ କେତୋଟି ସଂଖ୍ୟା ଲେଖାଯାଇଥିଲା ।

ଚିତ୍ରଟି କିପରି ଏବଂ ତା ତଳେ କଣ ଲେଖାଯାଇଥିଲା ଏଠାରେ ଦିଆଗଲା ।

ରଜାଙ୍କ ଗୁପ୍ତ ନଅର
ନଅର ଭିତରେ ନଅଟା ଘର
ମଝି ଉଆସରେ ପାଟ ମହିଷୀ
ତାଙ୍କ ଚାରିପାଖେ ପୋଇଲି ଦାସୀ
ବାଟ ଘରଟି ଖାଲି
ସେଇ ଘରଟିକୁ ଭରିବ ଯିଏ
ଆଟାଚି଼ ଦେବ ସେ ଖୋଲି ।




Source: Author, Digitized by PPRACHIN, SOA

ଏ ଚିତ୍ର ଆଉ ରହସ୍ୟପୂର୍ଣ୍ଣ ଲେଖା ପଢ଼ି ତିନିଭାଇଙ୍କ ମୁଣ୍ଡ ଚକ୍ର ଖାଇଲା । ତିନିହେଁ ଶିକ୍ଷିତ ହେଲେହେଁ ଏ ପ୍ରହେଳିକାର ଆଦି ଅନ୍ତ ସେମାନେ ପାଇପାରିଲେନି । ଶେଷରେ ନାତି ବିଜୁ କାଗଜ ଖଣ୍ଡିକ ଆଣି ଦେଖିଲା । ସେ ପଞ୍ଚମ ଶ୍ରେଣୀରେ ପଢ଼େ । ଚିତ୍ରରୁ ସେ'କଣ ବୁଝିଲା କେଜାଣି ଦୁଇମିନିଟ୍ ଭିତରେ ଗୁପ୍ତଚାବିର ସଂଖ୍ୟା ମିଳେଇ ଆଟାଚିଟା ଖୋଲିଦେଲା । ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଆଟାଚି ଖୋଲିବାରୁ ଦେଖାଗଲା ତା'ଭିତର ନା ଥିଲା ସୁନାଟଙ୍କା ନା ମୋତି ମାଣିକ । ଥିଲା ବିଡ଼ାଏ କାଗଜ । ବୁଢ଼ା ନିଜର ଏକମାତ୍ର ନାତି ବିଜୁ ନାଁରେ ଲକ୍ଷେ ଟଙ୍କାର ଖଣ୍ଡେ ବିମା ପଲିସୀ କରିଥିଲେ । ବିଜୁର କଲେଜ ପଢ଼ିବା ବେଳକୁ ଟଙ୍କା ପତ୍ର ପାଇଁ ଯେମିତି କିଛି ଅସୁବିଧା ନହୁଏ । କାଗଜ ଦେଖି ବିଜୁର ମନ କୁଣ୍ଢେମୋଟ । ସେ ଜେଜେଙ୍କ ପାଦ ଛୁଇଁ ପ୍ରଣାମ କଲା । ସେତେବେଳକୁ ଜଗବନ୍ଧୁ ବାବୁଙ୍କ ପ୍ରାଣବାୟୁ ଉଡ଼ିସାରିଥିଲା ।

ପିଲାମାନେ, ମୁଁ ବୁଝିପାରୁନି ଏଚିତ୍ରରୁ ବିଜୁ କଣ ବୁଝିଲାଯେ ଗୁପ୍ତଚାବିଟା ଖୋଲିଦେଲା । ତୁମେମାନେ ଯା ରହସ୍ୟ କିଛି ବୁଝିପାରୁଛ କି ?



Source: Author, Digitized by PPRACHIN, SOA

# ।। ଜମିଦାରଙ୍କ ବିଚାର ।।

ସୁଜନ ପୁର ଗାଁର ଜମିଦାର ଭବାନୀ ଶଙ୍କର ବାବୁ । ଆଖପାଖ ପାଞ୍ଚଖଣ୍ଡ ମୌଜାରେ ନାଁ ତାଙ୍କର ଡାକବଜା । ଲୋକେ ତାଙ୍କୁ ଜମିଦାର ଭାବରେ ଯେତିକି ନ'ଜାଣନ୍ତି ତା'ଠୁ ଅଧିକ ଜାଣନ୍ତି ଜଣେ ପରୋପକାରୀ ଦୟାଳୁ ମଣିଷ ଭାବରେ । ପରର ଦୁଃଖ ଦେଖିଲେ ହୃଦୟ ତାଙ୍କର ତରଳି ଯାଏ । ତାଙ୍କ ପତ୍ନୀ ସରସ୍ୱତୀ ଦେବୀ ମଧ୍ୟ ଏକା ସ୍ୱଭାବର । ଗାଁର ପୁରୁଖା ଲୋକମାନେ କହନ୍ତି ପୂର୍ବେ ଜମିଦାର ଘର କୁଆଡ଼େ ଏତେ ସମ୍ପତ୍ତି ଥିଲା ଯେ ସେ ସବୁ ତଦାରଖ କରିବା ପାଇଁ ରହିଥିଲେ ପ୍ରାୟ ଦେଢ଼ଶହ କର୍ମଚାରୀ । ଏବେ ଦାନ ଖଇରାତିରେ ତିନିପା ସମ୍ପତ୍ତି ଉଡ଼ିଗଲାଣି । ଯାହା ବା କିଛି ରହିଛି ସେ ସବୁର ଦେଖାରଖା କରିବା ପାଇଁ ଅଛନ୍ତି ମାତ୍ର ଆଠ ଜଣ କର୍ମଚାରୀ ।

ଗାଁର ପୂର୍ବ ପାଖରେ ଥିବା ୫୦ ଏକର ଜମିର ଖବର ବୁଝନ୍ତି ଦୁଇଜଣ କର୍ମଚାରୀ, କୃଷ୍ଣଚନ୍ଦ୍ର ଓ ଗୌରଚନ୍ଦ୍ର । ପଶ୍ଚିମ ପାଖରେ ଥିବା ୩୫ଏକର ଜମିର ହାଲଚାଲ ବୁଝନ୍ତି ଝସ କେତନ ଓ ଚନ୍ଦ୍ରମୋହନ । ତା' ବାଦେ ଗାଁମୁଣ୍ଡରେ ଜମିଦାରଙ୍କର ଧାନକଳ ଓ ଚୁଡ଼ାକଳ ବି ଚାଲିଛି । ହିସାବପତ୍ର ବୁଝନ୍ତି ଘନଶ୍ୟାମ ଏବଂ ଜୀବନରାମ । ଗୁହାଳରେ ଗାଈ ଗୋରୁଙ୍କ ସଂଖ୍ୟା ପ୍ରାୟ ୫୦ । ତାଭିତରୁ ୧୫/୨୦ ଦୁହାଁଳିଆ ଗାଈ । ଏମାନଙ୍କ ଦାୟିତ୍ୱ ଖଗେନ୍ଦ୍ର ଓ ଛବିନ୍ଦ୍ର ଉପରେ ।

ଭବାନୀ ଶଙ୍କର ଦେଖନ୍ତି, ସବୁ ଠିକ୍ ଠାକ୍ ଚାଲିଛି । ହେଲେ ତାଙ୍କ ନିଜର ଭଲମନ୍ଦ କଥା ବୁଝିବାକୁ କିମ୍ବା ଘରର ବୋଲହାକ କରିବା ପାଇଁ କେହି ନାହିଁ । ଗୋଟିଏ ବୋଲି ପୁଅ, ସିଏ ବିଦେଶରେ ରହି ପାଠ ପଢୁଛି । ତେଣୁ ସେ ଆଉ ଜଣେ କର୍ମଚାରୀ ନିଯୁକ୍ତି ଦେବାକୁ ଠିକ୍ କଲେ ।

ସେ ତାଙ୍କ ମନ କଥା ବନ୍ଧୁ ରବିନ୍ଦ୍ର ମୋହନଙ୍କୁ କହିଲେ । ରବିନ୍ଦ୍ର ମୋହନ ଜଣେ ଯୋଗାଡ଼ିଆ ଲୋକ । ସେ କହିଲେ, ଆପଣଙ୍କ ପାଇଁ ଉପଯୁକ୍ତ ଲୋକ ମୋ ନଜରରେ

Source: Author, Digitized by PPRACHIN, SOA

ଚାରିପାଞ୍ଚ ଜଣ ଅଛନ୍ତି । ଯେମିତି କର୍ମଠ ସେମିତି ବିଶ୍ୱସ୍ତ । ମୁଁ କାଲି ସେମାନଙ୍କୁ ନେଇ ଆସିବି ।



ପରଦିନ ରବିନ୍ଦ୍ର ବାବୁ ୫ଜଣ ଲୋକଙ୍କୁ ସାଙ୍ଗରେ ଧରି ଆସିଲେ । ସେମାନଙ୍କ ପରିଚୟ ଦେବାକୁ ଯାଇ ଜଣ ଜଣ କରି ତାଙ୍କ ନାଁ କହିଲେ, ''ପ୍ରଥମ ଲୋକ ଜୟକୃଷ୍ଣ, ୨ୟ ମଦନ, ୩ୟ ଟଙ୍କଧର, ୪ର୍ଥ ପ୍ରାଣକୃଷ୍ଣ ଓ ୫ମ ବିଦ୍ୟାଧର । ମୋ ଜାଣିବାରେ ସମସ୍ତେ ବିଶ୍ୱସ୍ତ ଓ କର୍ମଠ । ଆପଣ ନିଜେ ପରୀକ୍ଷା କରି ଦେଖନ୍ତୁ । ଯାହାକୁ ଇଚ୍ଛା ତାକୁ ନିଯୁକ୍ତି ଦିଅନ୍ତୁ ।'' ଭବାନୀଶଙ୍କର ପରୀକ୍ଷା କରିଦେଖିଲେ, ରବିନ୍ଦ୍ର ମୋହନ ମିଛ କହୁନାହାନ୍ତି ? ପ୍ରତ୍ୟେକ ଲୋକ ଏକକୁ ଆରକେ ଯୋଗ୍ୟ । ସେ କାହାକୁ ନିଯୁକ୍ତି ଦେବେ କିଛି ସ୍ଥିର କରି ପାରିଲେନି । ଶେଷରେ ସେ ଗୋଟେ ଉପାୟ ଚିନ୍ତା କଲେ ।

Source: Author, Digitized by PPRACHIN, SOA

ପୂର୍ବରୁ ଥିବା ଆଠଜଣ କର୍ମଚାରୀଙ୍କ ନାଁ ସେ ଗୋଟେ କାଗଜରେ ଲେଖିଲେ । ଦେଖିଲେ ନାଁ ଗୁଡ଼ିକ ମଧ୍ୟରେ ଏକ ବିଶେଷ କ୍ରମିକତା ରହିଛି । ସେ ଭାବିଲେ ଏହି କ୍ରମିକତାକୁ ବଜାୟ ରଖିବାକୁ ହେଲେ ଟଙ୍କଧରକୁ ନିଯୁକ୍ତି ଦେବା ଦରକାର । ସେ ଟଙ୍କଧର ନାମକ ଲୋକଟିକୁ ହିଁ ନିଯୁକ୍ତି ଦେଲେ ।

ପିଲାମାନେ, ମୁଁ ବୁଝିପାରୁନି, ସେ ଆଠଟି ନାଁ ଏବଂ 'ଟଙ୍କଧର' ମଧ୍ୟରେ କି ପ୍ରକାର କ୍ରମିକତା ଅଛି । ଭାବୁଛି ତୁମେ ଜଣେ ଜଣେ ବୁଦ୍ଧିମାନ ପିଲା ଏବଂ ଏହାର ସଠିକ୍ ଉତ୍ତର ନିଶ୍ଚୟ କହିପାରିବ ।



Source: Author, Digitized by PPRACHIN, SOA

# ।। ଢମଣା ନଈରେ ବନ୍ୟା ।।

ପିଲାମାନେ, ନଈବଢ଼ି ସମ୍ପର୍କରେ ତୁମେମାନେ ନିଶ୍ଚୟ ଜାଣିଥିବ । ଦେଖିଥିବ ମଧ୍ୟ । ଯିଏ ଅଙ୍ଗେ ନନିଭେଇଛି ସିନେମା ଟିଭି ଆଦିରେ ଦେଖିଥିବ । ନଈକୂଳିଆ ଗାଁ ଗୁଡ଼ିକ ପାଇଁ ବନ୍ୟା ଗୋଟେ ସାଧାରଣ ଘଟଣା । ସରକାର ଆଜିକାଲି ଅବଶ୍ୟ ବନ୍ୟା ନିୟନ୍ତ୍ରଣ ପାଇଁ ସଚେତନ ହେଲାଣି । ନଦୀର ଦୁଇ ତଟରେ ପଥରର ବନ୍ଧ ଯୋଡ଼େଇ କରି ବନ୍ୟା ନିୟନ୍ତ୍ରଣ ପାଇଁ ଉଦ୍ୟମ କରାଗଲାଣି । ନଦୀବନ୍ଧ ଦ୍ୱାରା ଜଳସେଚନ ଓ ବିଦ୍ୟୁତ୍ ଉତ୍ପାଦନ କରାଗଲାଣି । ବନ୍ୟାନିୟନ୍ତ୍ରଣ ପାଇଁ ମହାନଦୀ ଉପରେ ବନ୍ଧାଯାଇଥିବା ହିରାକୁଦ ବନ୍ଧ ଆମ ଦେଶର ସବୁଠୁ ବଡ଼ ନଦୀବନ୍ଧ ।

ନଦୀବନ୍ଧ ନଦୀର ଉଭୟ ତଟକୁ ସଂଯୋଗ କରେ । ତେଣୁ ବନ୍ଧ ଉପର ଦେଇ ଗମନାଗମନ ଏବଂ ଯାନବାହାନ ଯାତାୟାତ ପାଇଁ ସୁବିଧା ହୁଏ । ବନ୍ଧର ତଳଭାଗରେ ନଦୀଜଳକୁ ନିୟନ୍ତ୍ରଣ କରାଯାଏ । ତଳ ଭାଗରେ ଜଳ ନିର୍ଗମନ ପାଇଁ ଅନେକ ଗୁଡ଼ାଏ ବାଟ ବା ଗେଟ୍ ଥାଏ, ଯାହାକୁ ଆମେ କହୁ ସ୍ଲୁଇସ୍ ଗେଟ୍ । ସ୍ଲୁଇସ୍ ଗେଟ୍‌କୁ ଆବଶ୍ୟକ ଅନୁଯାୟୀ ଖୋଲି ବା ବନ୍ଦ କରି ବନ୍ଧ ଉପର ଭାଗର ଜଳ ତଳ ଅଞ୍ଚଳକୁ ଛଡ଼ାଯାଏ । ତା ଦ୍ୱାରା ବନ୍ୟା ନିୟନ୍ତ୍ରଣ ସହିତ ଜଳସେଚନ ମଧ୍ୟ ହୁଏ ।

ମୁଁ ଏଠାରେ ଯେଉଁ ନଦୀବନ୍ଧ କଥା କହୁଛି, ସେ ଏକ ଭିନ୍ନ ଧରଣର ବନ୍ଧ । ନଈର ନାଁ ଢ଼ମଣା । ଖୁବ୍ ବଡ଼ନଦୀ ନ'ହେଲେ ମଧ୍ୟ ପ୍ରତିବର୍ଷ ବନ୍ୟାପାଇଁ ତା'ର ନାଁ ଅଛି । ବନ୍ଧ ଉପର ଭାଗରେ, ନଈ କୂଳେ କୂଳେ, ଛୋଟ ବଡ଼ ପ୍ରାୟ ୨୦ ଖଣ୍ଡ ଗାଁ । ବନ୍ଧ ତଳ ମୁଣ୍ଡରେ ଶହ ଶହ ଏକର ଧାନଜମି ।

ଥରେ ଢମଣା ନଈରେ ବନ୍ୟା ଆସିଲା । ଉପର ମୁଣ୍ଡରେ ଭୀଷଣ ବର୍ଷା ହେବାରୁ ଗୋଟିଏ ଦିନରେ ନଈ ପାଣି ବିପଦ ସଙ୍କେତ ଟପିଗଲା । ବନ୍ଧ କର୍ତ୍ତୃପକ୍ଷ ଜଳସେଚନ ପାଇଁ ବନ୍ଧର କେବଳ ଏକ ନମ୍ବର ସ୍ଲୁଇସ୍ ଗେଟ୍‌କୁ ସବୁବେଳେ ଖୋଲା ରଖିଥାନ୍ତି । ତା'ଦ୍ୱାରା ଖୁବ୍ କମ୍ ପାଣି ଅନବରତ ନିଷ୍କାସିତ ହେଉଥାଏ । ପାଣି

Source: Author, Digitized by PPRACHIN, SOA

ଯେତେବେଳେ ବିପଦ ସଙ୍କେତ ଟପିଲା ଗାଁ ଲୋକେ ଆତଙ୍କ ମଣିଲେ । ସମସ୍ତେ ଏକଜୁଟ ହୋଇ ନଦୀବନ୍ଧ ଅଫିସରଙ୍କୁ ଯାଇ ଆପତ୍ତି ଜଣାଇଲେ ଯେ ଯେତେଶୀଘ୍ର



ସମ୍ଭବ ଅନ୍ୟ ଗେଟ୍ ଗୁଡ଼ିକୁ ଖୋଲି ଅଧିକ ପାଣି ଖଲାସ କରାଯାଉ, ନଚେତ ଗାଁ-ଗଣ୍ଡା ଭାସିଯିବ । ଅଫିସର୍ ଦେଖିଲେ ଘଟଣା ସତ । ସେ ସଙ୍ଗେ ସଙ୍ଗେ ତାଙ୍କ ଉପରିସ୍ଥ କର୍ମକର୍ତ୍ତାଙ୍କ ସହିତ ଯୋଗାଯୋଗ କଲେ । ଉପରୁ ନିର୍ଦ୍ଦେଶ ମିଳିଲା, ଯେ ଆଉ ଗୋଟିଏ

Source: Author, Digitized by PPRACHIN, SOA

ମାତ୍ର ଗେଟ୍ ଖୋଲାଯାଉ । ତାଦ୍ୱାରା ଉପରମୁଣ୍ଡରେ ବନ୍ୟାନିୟନ୍ତ୍ରଣ ହୋଇପାରିବ ଏବଂ ତଳ ଅଞ୍ଚଳର ଫସଲ ଜମି ମଧ୍ୟ ରକ୍ଷା ପାଇବ ।

ଅଫିସର ସଙ୍ଗେ ସଙ୍ଗେ ତାଙ୍କର ତଳିଆ କର୍ମଚାରୀଙ୍କୁ ଡାକିଲେ । ସେ କର୍ମଚାରୀ ଜଣକ ନୂଆକରି ଚାକିରିରେ ଯୋଗ ଦେଇଥାନ୍ତି । ବାବୁ ତାଙ୍କୁ ବୁଝାଇଲେ, ''ଦେଖ, ନଦୀ ବନ୍ଧରେ ଆମର ସର୍ବମୋଟ ଚାରିଟା ସ୍ଲୁଇସ୍ ଗେଟ୍ ଅଛି । ଏକ ନମ୍ବର ଗେଟ୍ ସବୁବେଳେ ଖୋଲାଥାଏ । ଏବେ ବି ଅଛି । ବାକି ରହିଲା ତିନିଟା ଗେଟ୍ । ଦୁଇ ନମ୍ବର ଗେଟ୍ ଖୋଲିଲେ ଅଧମିଟର ବ୍ୟାସାର୍ଦ୍ଧର ଚାରିଟା ନଳାର ପାଣି ଏକାବେଳେକେ ଖଲାସ ହେବ । ତିନି ନମ୍ବର ଗେଟ୍ ଖୋଲିଲେ ଦେଢ଼ମିଟର ବ୍ୟାସର ଦୁଇଟି ନଳାରୁ ପାଣି ବାହାରକୁ ଯିବ । ଚାରି ନମ୍ବର ଗେଟ୍ ଖୋଲିଲେ ଦୁଇମିଟର ବ୍ୟାସର ଗୋଟିଏ ମାତ୍ର ନଳା ଦେଇ ପାଣି ନିଷ୍କାସନ ହେବ । କିନ୍ତୁ ଉପରୁ ନିର୍ଦ୍ଦେଶ ଆସିଛି, ଯେକୌଣସି ଗୋଟିଏ ସ୍ଲୁଇସ୍ ଗେଟ୍ ଖୋଲିବା ପାଇଁ । ତୁମେ ଏବେ ନିଜେ ହିସାବ କରି ଦେଖ କେଉଁ ଗେଟ୍‌ଟି ଖୋଲିଲେ କମ୍ ସମୟ ଭିତରେ ସବୁଠୁ ଅଧିକ ପାଣି ନିର୍ଗମନ ହୋଇପାରିବ ଏବଂ ଜଳପତ୍ତନ କମିବ । ମନେ ରଖିବ, ଗୋଟିଏ ମାତ୍ର ଗେଟ୍ ଖୋଲିବାକୁ ପଡ଼ିବ ।''

ବିଚରା କର୍ମଚାରୀ ଜଣକ ବଡ଼ ଅଡୁଆରେ ପଡ଼ିଲେ । ସେ ଗେଟ୍ ଖୋଲିବେ କଣ ନଦୀ ବନ୍ଧ ଉପରେ ମୁଣ୍ଡରେ ହାତ ନେଇ ବସି ଭାବିବାକୁ ଲାଗିଲେ କେଉଁ ଗେଟ୍‌ଟି ଖୋଲିବେ । ତେଣେ ବନ୍ୟାଜଳ ଗାଁ ଭିତରେ ପଶିବା ଆରମ୍ଭ କଲାଣି ।

ପିଲାମାନେ, ସେ ଜାଗାରେ ଯଦି ତୁମେ ଥାଆନ୍ତ କେଉଁ ଗେଟ୍‌ଟିକୁ ଖୋଲି ଗାଁ ଲୋକଙ୍କୁ ବନ୍ୟାଦାଉରୁ ରକ୍ଷା କରିଥାନ୍ତ ?



Source: Author, Digitized by PPRACHIN, SOA

# ।। ନାଁକୁ ନେଇ ପ୍ରହେଳିକା ।।

ବିଜିପୁର ଗାଁର ବିଶ୍ୱନାଥ ହାଇସ୍କୁଲ୍‌ରେ ଆଖ ପାଖ ପାଞ୍ଚଖଣ୍ଡ ଗାଁର ପିଲା ପଢ଼ନ୍ତି । ପୁରୁଣା ହେଲେ ମଧ୍ୟ ଭଲ ପଢ଼ା ହୁଏ ବୋଲି ସ୍କୁଲର ନାଁ ଅଛି । ପଢ଼ା ଅନୁସାରେ ମାଟ୍ରିକ ରେଜଲ୍ଟ ମଧ୍ୟ ପ୍ରତିବର୍ଷ ଭଲ ହୁଏ । ଦୁଇ ବର୍ଷ ପୂର୍ବେ ଏଇ ହାଇସ୍କୁଲ୍‌ର ଜଣେ ଛାତ୍ର ରାଜ୍ୟର ପ୍ରଥମ ଦଶଜଣଙ୍କ ଭିତରେ ୫ମ ସ୍ଥାନ ଅଧିକାର କରିଥିଲା । ତା'ଛଡ଼ା ଏ ସ୍କୁଲ୍‌ର ଅଧିକାଂଶ ପିଲା ପାସ୍ କରନ୍ତି ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀରେ । ଏହି ସଫଳତା ମୂଳରେ ଶିକ୍ଷକ ମାନଙ୍କ ଆନ୍ତରିକତା ଓ ନିଷ୍ଠା ସାଙ୍ଗକୁ ପିଲାଙ୍କ ପରିଶ୍ରମ ରହିଛି ବୋଲି ଅଭିଭାବକ ମାନେ କହନ୍ତି ।

ଗତ ବର୍ଷର ମାଟ୍ରିକ୍ ଫଳାଫଳ ମଧ୍ୟ ମନ୍ଦ ହୋଇ ନ'ଥିଲା । ମୋଟ ୨୫ ଜଣ ପିଲା ପରୀକ୍ଷା ଦେଇଥିଲେ । ସେମାନଙ୍କ ମଧ୍ୟରୁ ପ୍ରଥମ ଶ୍ରେଣୀରେ ୫ଜଣ, ଦ୍ୱିତୀୟ ଶ୍ରେଣୀରେ ୭ଜଣ ଏବଂ ତୃତୀୟ ଶ୍ରେଣୀରେ ୬ଜଣ ପିଲା, ଏହିପରି ମୋଟ ଅଠର ଜଣ ପିଲା ପାସ୍ କରିଥିଲେ ।

ଭଲ ସହିତ ମନ୍ଦ ସବୁ ଯୁଗରେ ଏବଂ ସବୁଠାରେ ଅଛି । ବିଶ୍ୱନାଥ ହାଇସ୍କୁଲ୍‌ରେ ମଧ୍ୟ ଭଲ ପିଲାଙ୍କ ସହିତ କେତେକ ଦୁର୍ବଳ ଶ୍ରେଣୀର ଛାତ୍ର ପଢ଼ନ୍ତି । ଦୁଷ୍ଟ ପ୍ରକୃତିର ପିଲା ମଧ୍ୟ ଅଛନ୍ତି । ସେମାନଙ୍କ ଦୁଷ୍ଟାମୀ ଯୋଗୁଁ ଗତବର୍ଷ ମାଟ୍ରିକ୍ ଫଳାଫଳ ବାହରିବା ପରେ କେମିତି ଗୋଟେ କାଣ୍ଡ ଘଟିଗଲା ସେ ବିଷୟରେ କହୁଛି ।

ଯେଉଁଦିନ ଫଳାଫଳ ବାହାରିଲା ସେ ସମ୍ପର୍କୀୟ ଚିଠି ଆସି ସ୍କୁଲ୍‌ରେ ପହଞ୍ଚିଲା ସନ୍ଧ୍ୟାରେ । ସେତେବେଳକୁ ସ୍କୁଲ୍‌ର ଶିକ୍ଷକ ଏବଂ କର୍ମଚାରୀ ମାନେ ଚାଲିଯାଇଥାନ୍ତି । ଥାଆନ୍ତି କେବଳ ପ୍ରଧାନ ଶିକ୍ଷକ । ତା' ପରଦିନ ସକାଳେ ତାଙ୍କର ଗୋଟେ ଜରୁରୀ କାମରେ ୨ଦିନ ପାଇଁ ବାହାରକୁ ଯିବାର ଥାଏ । ତେଣୁ ସେ ଫଳାଫଳ କାଗଜର ଖଣ୍ଡେ ନକଲ ପ୍ରସ୍ତୁତ କଲେ । ମୂଳ ଚିଠିଟିକୁ ଆଲମାରୀରେ ରଖି ଚାବି ପକାଇଦେଲେ । ନକଲ କରିଥିବା କାଗଜଟିକୁ ସ୍କୁଲ୍ ନୋଟିସ୍ ବୋର୍ଡ଼ରେ ଝୁଲାଇଦେଲେ । ଏହା କରିବାର କାରଣ ସେ ପରଦିନ ସ୍କୁଲ୍‌କୁ ଆସି ନ'ପାରିଲେ ମଧ୍ୟ ପିଲାମାନେ ଯେମିତି ଫଳାଫଳ ଜାଣି ପାରିବେ ।

Source: Author, Digitized by PPRACHIN, SOA

ପରଦିନ ବଡ଼ି ଭୋରରୁ ସେ ସ୍କୁଲ୍‌ର ଜଣେ ଦୁଷ୍ଟ ଛାତ୍ର ଆସି ନୋଟିସ୍ ବୋର୍ଡରେ ଝୁଲା ହୋଇଥିବା କାଗଜରୁ ଫାଳେ ଚିରି ନେଇଗଲା । ସେ ମଧ୍ୟ ପରୀକ୍ଷା ଦେଇଥିଲା ଏବଂ ଫେଲ ହେବ ବୋଲି ଜାଣିଥିଲା । ତେଣୁ ଈର୍ଷାପରାୟଣ ହୋଇ ସେ ଏପରି କଲା । ସକାଳେ ପିଲାମାନେ ଆସି ଦେଖିଲେ ଫଳାଫଳ ବାହାରିଛି କିନ୍ତୁ ସେଥିରୁ କିଛି ପିଲାଙ୍କ ନାଁ ଚିରି ନିଆ ହେଇଛି । ନୋଟିସ୍‌ର ଉପର ଅଂଶରୁ ଜାଣି ହେଉଥିଲା ଯେ ମୋଟ ୨୫ଜଣ



ପରୀକ୍ଷାର୍ଥୀଙ୍କ ମଧ୍ୟରୁ ପ୍ରଥମ ଶ୍ରେଣୀରେ ପାଞ୍ଚଜଣ, ଦ୍ୱିତୀୟ ଶ୍ରେଣୀରେ ସାତଜଣ ଏବଂ ତୃତୀୟ ଶ୍ରେଣୀରେ ଛଅଜଣ ଏପରି ଅଠର ଜଣ ପିଲା ପାସ୍ କରିଛନ୍ତି, କିନ୍ତୁ ପ୍ରଥମ ଶ୍ରେଣୀ ତାଲିକାରେ କେବଳ (୧) ଦିବାକର ଦଳେଇ, (୨) ରବିନାରାୟଣ ରଣା (୩) ଭାସ୍କର ସାବତ ଏହି ତିନୋଟି ନାଁ ଥିଲା ବାକି ଦୁଇଟି ନାଁ ଚିରି ଯାଇଥିଲା । ଠିକ୍ ସେମିତି ଦ୍ୱିତୀୟ

Source: Author, Digitized by PPRACHIN, SOA

ଶ୍ରେଣୀରେ ପାସ୍ କରିଥିବା ସାତ ଜଣ ପିଲାଙ୍କ ମଧ୍ୟରୁ – (୧) ଗିରିଧାରୀ ଗୌଡ଼ (୨) ଗୋବିନ୍ଦ ଚନ୍ଦ୍ର ସାହୁ (୩) ଗୋପାଳକୃଷ୍ଣ ମହାନ୍ତି (୪) ଗୋପବନ୍ଧୁ ବାରିକ, ଏହି ଚାରିଜଣଙ୍କ ନାଁ ଥିଲା ଏବଂ ତିନୋଟି ନାଁ ଚିରିଯାଇଥିଲା । ତୃତୀୟ ଶ୍ରେଣୀରେ ପାସ୍ କରିଥିବା ଛ'ଜଣ ପିଲାଙ୍କ ମଧ୍ୟରୁ (୧) ବିଶ୍ୱନାଥ ବର୍ମା (୨) ବିଭୂତି ଭୂଷଣ ଭୋଇ (୩) ଗଙ୍ଗାଧର କୁଅଁର ଏହି ତିନୋଟି ନାଁ ରହି ବାକି ୩ଜଣଙ୍କ ନା ଚିରିଯାଇଥିଲା ।

ପିଲାମାନେ ଏ ଘଟଣା ଦେଖି ହୋ-ହାଲ୍ଲା ଆରମ୍ଭ କରିଦେଲେ । ସେମାନେ ଚାହୁଁଥିଲେ ସବୁ ପାସ୍ ପିଲାଙ୍କ ନାଁ । ପ୍ରଧାନ ଶିକ୍ଷକ ତ ନଥାନ୍ତି, ସହକାରୀ ଶିକ୍ଷକ ମାନେ କଣ ବା କରିପାରିବେ ? ସେମାନେ ପିଲାମାନଙ୍କୁ ବୁଝାଇବାକୁ ବହୁତ ଚେଷ୍ଟା କଲେ, କିନ୍ତୁ କିଛି ଲାଭ ହେଲାନି । ଶେଷରେ ଶିକ୍ଷକ ମାନେ ଏକାଠି ବସିଲେ । ପ୍ରଧାନ ଶିକ୍ଷକ ନଥିବା ହେତୁ ମୁଖ୍ୟ ସହକାରୀ ଶିକ୍ଷକଙ୍କ ଗୁରୁ ଦାୟିତ୍ୱ । ବିଜ୍ଞାନ ଶିକ୍ଷକ ତାଙ୍କୁ କହିଲେ, ଆଜ୍ଞା, ପ୍ରଧାନ ଶିକ୍ଷକଙ୍କ ସହିତ କାଲି ରାତିରେ ମୁଁ ଅଳ୍ପ ସମୟ ପାଇଁ ମିଶିଥିଲି ।

ଫଳାଫଳ ସମ୍ପର୍କରେ ସେ କହୁଥିଲେ ଯେ, ଏ ବର୍ଷ ପାସ୍ କରିଥିବା ପିଲାମାନଙ୍କ ନାଁ ଗୁଡ଼ିକରେ ଶ୍ରେଣୀ ଅନୁସାରେ କିଛି ଗୋଟେ ବିଚିତ୍ର ସାମଞ୍ଜସ୍ୟ ରହିଛି । ମୁଁ ଆଉ କିଛି ପଚାରିବା ପୂର୍ବରୁ ସେ ଚାଲି ଯାଇଥିଲେ । ମୁଁ କିଛି ବୁଝି ପାରିଲିନି । ଏବେ ଆମେ ପରୀକ୍ଷା ଦେଇଥିବା ସବୁ ପିଲାଙ୍କ ନାଁ ଦେଖିଲେ ହୁଏତ କିଛି ସୂତ୍ର ପାଇବା ।

ନୋଟିସ୍ ବୋର୍ଡ଼ରେ ଦଶ ଜଣ ପିଲାଙ୍କ ନାଁ ଅଛି । ତେଣୁ ବାକି ପନ୍ଦର ଜଣଙ୍କ ନାଁ ଲେଖି ଦେଖିବା ଚାଲନ୍ତୁ । ସେମାନେ ନାଁ ଗୁଡ଼ିକୁ ଏହି କ୍ରମରେ ଲେଖିଲେ ।

୧ । ଦିନମଣି ଜେନା

୨ । ଧନେଶ୍ୱର ଧଳ

୩ । ମାଧବଚନ୍ଦ୍ର ମହାନ୍ତି

୪ । ଉମା ଚରଣ ଚୌଧୁରୀ

୫ । କମଳାକାନ୍ତ କର

୬ । ମହେଶ୍ୱର ମହାନ୍ତି

୭ । ବିନୟ କୁମାର ବରାଳ

୮ । ନୀଳକଣ୍ଠ ନାଏକ

Source: Author, Digitized by PPRACHIN, SOA

୯ । ନୀଳମଣି ନାୟକ

୧୦ । ପ୍ରଭଞ୍ଜନ ପାଢ଼ୀ

୧୧ । ବନମାଳୀ ବେହେରା

୧୨ । ବିଜୟ କୁମାର ବିଶୋୟୀ

୧୩ । ଶଶାଙ୍କ ଶେଖର ସାହୁ

୧୪ । ବିରଭଦ୍ର ବଳ

୧୫ । ପ୍ରଭାକର ପାତ୍ର

ଲେଖା ସରିବା ପରେ ସହକାରୀ ଶିକ୍ଷକ ନାଁ ଗୁଡ଼ିକୁ ଧ୍ୟାନ ସହକାରେ କିଛି ସମୟ ଦେଖିଲେ । ହଠାତ୍ ତାଙ୍କୁ ସମାଧାନର ବାଟ ମିଳିଗଲା । ଯେଉଁ ପିଲାଙ୍କ ନାଁ ଚିରି ଯାଇଥିଲା କେମିତି କେଜାଣି ସେ ଜାଣିଗଲେ । ସଂଗେ ସଂଗେ ଆଉ ଗୋଟେ ନୂଆ ତାଲିକା ବାହାର କରି ନୋଟିସ୍ ବୋର୍ଡ଼ରେ ମାରିଦେଲେ । ପିଲାମାନେ ଖୁସ୍ । ପରଦିନ ପ୍ରଧାନଶିକ୍ଷକ ଆସି ଦେଖିଲେ ସହକାରୀ ଶିକ୍ଷକ ଖୁବ୍ ଚତୁରତା ଏବଂ ବିଜ୍ଞତାର ସହିତ ସମସ୍ୟାର ସମାଧାନ କରି ଦେଇଛନ୍ତି । ସବୁପିଲାଙ୍କ ନାଁ ଠିକ୍ ଅଛି

ଏବେ ପିଲାମାନେ, ତୁମ ମାନଙ୍କୁ ମୋର ପ୍ରଶ୍ନ, ସହକାରୀ ଶିକ୍ଷକଙ୍କ ସ୍ଥାନରେ ଯଦି ତୁମେ ଥାଆନ୍ତ ପାସ୍ ପିଲାଙ୍କ ସଠିକ୍ ନାଁ ଗୁଡ଼ିକ ୧୫ଟି ନାଁ ଭିତରୁ କିପରି ବାଛି ପାରିଥାନ୍ତ କହିଲ ?



Source: Author, Digitized by PPRACHIN, SOA

# ।। ପରଧନ ।।

ସୁବର୍ଣ୍ଣପୁର ଗାଁର ସେଠ୍ ସୋନାରାମ୍ । ସୋନାରାମ୍‌ଙ୍କ ପେଶା ହେଲା ସୁନା ଅଳଙ୍କାର ବନ୍ଧକ ରଖି ଲୋକଙ୍କୁ କରଜ ଦେବା । ସୁନା ଛଡ଼ା ଅନ୍ୟ କୌଣସି ବସ୍ତୁ ବନ୍ଧକ ରଖିବାକୁ ସେ ପସନ୍ଦ କରନ୍ତି ନାହିଁ । କରଜ ଟଙ୍କା ଉପରେ ସେ ଏତେ ଚଢ଼ା ସୁଧ କଷନ୍ତି ଯେ, ବେଳେବେଳେ ଲୋକେ ପୁରାଟଙ୍କା ସୁଝି ପାରନ୍ତିନି । ତେଣୁ ବନ୍ଧକ ଥିବା ଅଳଙ୍କାର ତକ ବୁଡ଼ିଯାଏ । ସେଠ୍ ଏପରିମଉକାକୁ ଚାହିଁ ବସିଥାନ୍ତି । ସେ ଅଳଙ୍କାରତକ କବଜା କରି ନିଅନ୍ତି ।

ଏହିପରି ଅସତ୍ ଉପାୟରେ ସେ ଠୁଳ କରିଥାନ୍ତି ସିମେଣ୍ଟ ବସ୍ତାରେ ବସ୍ତାଏ ସୁନା ଅଳଙ୍କାର ! ସେଠ୍‌ଙ୍କର ଗୋଟିଏ ବୋଲି ପୁଅ । ଗାଁ ସ୍କୁଲରେ ପଢ଼େ । । ବାପାଙ୍କର ଏ ଅନ୍ୟାୟ କାରବାର ତାକୁ ଭଲ ଲାଗେନି । କିନ୍ତୁ ସେ ଛୋଟ ହେତୁ ଏହାର ପ୍ରତିବାଦ କରିପାରେ ନାହିଁ । ସୁଧୀର ନାମକ ଜଣେ ଯୁବକ ସେଠ୍‌ଙ୍କ ଘରେ ଚାକର ଥାଏ ।

ସେଠ୍‌ଙ୍କ ସୁନାବସ୍ତା ଦେଖି ସୁଧୀର ମନରେ ଲୋଭ ବସା ବାନ୍ଧିଲା । ଦିନେ ରାତିରେ ସେ ସୁନା ବସ୍ତାଟି ଧରି ଘରୁ ଚମ୍ପଟ ମାରିଲା । ସକାଳେ ସେଠ୍ ଯେତେବେଳେ ଏ ଘଟଣା ଜାଣିଲେ, ''ହାୟ...ମୋ ସୁନା''...କହି ଟଳି ପଡ଼ିଲେ । ତାଙ୍କ ପ୍ରାଣ ବାୟୁ ଉଡ଼ିଗଲା ।

ସୁଧୀର ସୁନାବସ୍ତା ଧରି ପହଞ୍ଚିଲା ଗୋଟେ ଜଙ୍ଗଲରେ । ପ୍ରଥମେ ସେ ଗୋଟେ ଗାତ ଖୋଳି ବସ୍ତାଟିକୁ ପୋତିଦେଲା । ତାପରେ ଭାବିଲା, ସୁନା ଗୁଡ଼ିକ ଏପରି ପୋତି ରଖିଲେ ଖତ ଖାଇଯାଇପାରେ, ଯା' ପାଇଁ ଗୋଟେ ମଜବୁତ୍ ଲୁହାସିନ୍ଦୁକ ହେଲେ ଭଲ ହୁଅନ୍ତା । ଏହା ଭାବି ସେ କିଛି ଅଳଙ୍କାର ଧରି ପାଖ ସହରକୁ ଗଲା । ଲୁହା ଦୋକାନରୁ ଗୋଟେ ସିନ୍ଦୁକ କିଣିଲା । ବିଶେଷ ଧରଣର ଚାବିଟିଏ ମଧ୍ୟ କିଣି ଆଣିଲା । ସେଇଟା ଥିଲା ନମ୍ବର ଘୁରା ଗୁପ୍ତଚାବି । ତିନି ଅଙ୍କ ବିଶିଷ୍ଟ କୌଣସି ଏକ ନିର୍ଦ୍ଦିଷ୍ଟ ସଂଖ୍ୟାରେ

Source: Author, Digitized by PPRACHIN, SOA

ସେ ଚାବି ଖୋଲିବ ଏବଂ ବନ୍ଦହେବ । ଚାବିପାଇଁ ସୁଧୀର ମନେମନେ ଗୋଟିଏ ସଂଖ୍ୟା ସ୍ଥିର କଲା । କାଳେ ସଂଖ୍ୟାଟି ଭୁଲିଯିବ, ସେଥିପାଇଁ ସେ ଖଣ୍ଡେ କାଗଜରେ ଏଣୁ ତେଣୁ ବୁଢ଼ିଆଣୀ ଜାଲପରି ଗୁଡ଼ାଏ ଗାର ଟାଣି ତା'ଭିତରେ କେତେକ ସଂଖ୍ୟା ଲେଖିଲା । ସେଥିରୁ ଯେପରି ସେ'ହିଁ ଜାଣିପାରିବ, ଚାବି ଖୋଲିବା ଗୁପ୍ତ ସଂଖ୍ୟାଟି କେତେ । କାଗଜ ଖଣ୍ଡକ ସେ ପକେଟ୍‌ରେ ରଖିଲା ।



ତା'ପରେ ତା'ର ଚିନ୍ତାହେଲା, ସେ ଓଜନିଆ ସିନ୍ଦୁକଟିକୁ ବୋହି, ଜଙ୍ଗଲକୁ ନେବ କେମିତି ? ସେଥିପାଇଁ ସେ ଦୁଇଜଣ ବଳୁଆ ଲୋକ ଠିକ୍ କଲା । କିଛି ମୂଲ ଦେଲେ ସେମାନେ ସିନ୍ଦୁକଟିକୁ ସେ କହିବା ଜାଗାକୁ ବୋହିନେବାକୁ ରାଜିହେଲେ ଏବଂ ସିନ୍ଦୁକ ମୁଣ୍ଡାଇ ସୁଧୀର ପଛେ ପଛେ ଚାଲିଲେ । ଜଙ୍ଗଲର ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ପରେ ସୁଧୀର ସେମାନଙ୍କୁ ସିନ୍ଦୁକ ରଖି ଏବଂ ପାରିଶ୍ରମିକ ନେଇ ଚାଲିଯିବା ପାଇଁ କହିଲା ।

Source: Author, Digitized by PPRACHIN, SOA

ଯୁବକ ଦୁହେଁ ସୁଧୀର ଠାରୁ ବୁଦ୍ଧିଆ ଥିଲେ । ସେମାନେ ଭାବିଲେ, ଜଙ୍ଗଲ ଭିତରେ ଲୋକଟାକୁ ଲୁହା ସିନ୍ଦୁକ କାହିଁକି ଦରକାର ପଡ଼ିଲା ? ନିଶ୍ଚୟ କିଛି ପୋତାଧନ ପାଇଥିବ !

ଏହା ଭାବି ସେ ଯୁବକ ଦୁହେଁ ଫେରିଯିବା ବାହାନାରେ କିଛି ଦୂର ଆସିଲେ ଏବଂ ଗୋଟେ ଗଛ ଉହାଡ଼ରେ ଲୁଚି ରହିଲେ । ସୁଧୀର ଭାବିଲା, ସେ ଦୁହେଁ ଚାଲିଗଲେ । ତା'ପରେ ସେ ନିର୍ଭୟରେ ଗାତଖୋଳି ସୁନାବସ୍ତା ବାହାରକଲା । ସେଥିରୁ ଗୋଟିଗୋଟି କରି ଅଳଙ୍କାର ବାହାରକରି ସିନ୍ଦୁକ ଭିତରେ ରଖିଲା । ସିନ୍ଦୁକର ଢାଙ୍କୁଣୀ ବନ୍ଦ କରି ଗୁପ୍ତ ନମ୍ବର ଚାବି ପକାଇଲା । ତା'ପରେ ସେ ତା ପକେଟରୁ ଚାବିନମ୍ବର ଲେଖାଥିବା କାଗଜଟିକୁ ବାହାର କଲା । କାଗଜଟିକୁ ମୋଡ଼ି ସିନ୍ଦୁକରେ ଗୋଟେ ଗୁପ୍ତ ଫାଙ୍କରେ ଚାପିଦେଲା । ଠିକ୍ ଏତିକିବେଳେ ଦୁହେଁ ସୁଧୀର ଉପରେ ଅତର୍କିତ ଆକ୍ରମଣ କରି ତାକୁ ଜୀବନରେ ମାରିଦେଲେ । ପାଖରେ ପଡ଼ିଥିବା ବସ୍ତା ଭିତରେ ତା ମୃତଦେହକୁ ପୂରାଇ ଖୋଳାହେଇଥିବା ଗାତରେ ପୋତିଦେଲେ । ତା'ପରେ ସେ ଦୁହେଁ ସୁନାଭର୍ତ୍ତି ସିନ୍ଦୁକ ମୁଣ୍ଡାଇ ଚାଲିଲେ ।

ବାଟ ଚାଲୁ ଚାଲୁ ଉଭୟଙ୍କୁ ଲୋଭ ଗ୍ରାସ କଲା । ଲୋଭ ହେତୁ ମନରେ ପାପ ଚିନ୍ତା ଆସିଲା । ଜଣେ କିପରି ଅନ୍ୟଜଣକୁ ହତ୍ୟାକରି ସବୁଧନ ନିଜେ ମାରିନେବ ଉଭୟଙ୍କ ମନରେ ଏହି ଯୋଜନା ଚାଲିଥାଏ । ଆଗରେ ନଈଟିଏ ପଡ଼ିଲା । ଘାଟରେ ନାଉରୀ ନାଆ ଧରି ଯାତ୍ରୀ ଅପେକ୍ଷାରେ ଥାଏ । ଦୁହେଁ ନାଆରେ ସିନ୍ଦୁକ ରଖି ବସିଲେ ଏବଂ ଆରପାରିକୁ ଯିବାକୁ କହିଲେ । ନାଆ ଚାଲିଲା । ହଠାତ୍ ମଝିନଈରେ ଜଣେ ଯୁବକ ଅନ୍ୟ ଜଣେ ଯୁବକକୁ ଧକ୍କା ଦେଇ ନଈକୁ ଠେଲିଦେଲା । ଭରା ନଈରେ ପ୍ରବଳ ସୁଅଥିବା ହେତୁ ଯୁବକଟି ବଞ୍ଚିପାରିଲା ନାହିଁ । ଏହା ଦେଖି ନାଉରିଆ ଭାବିଲା, ଏ ସିନ୍ଦୁରରେ ନିଶ୍ଚୟ ଅମାପ ଧନ ଅଛି । ଧନ ଲୋଭରେ ଜଣେ ଅନ୍ୟଜଣକୁ ନଈକୁ ଠେଲି ମାରିଦେଲା । ଏତିକି ଭାବିବା ବେଳକୁ ସିନ୍ଦୁକର ଥିବା ଅଦୃଶ୍ୟ ଧନର ଲୋଭ ନାଉରୀକୁ ବି ଗ୍ରାସ କରିସାରିଥାଏ । ସେ ଭାବିଲା, ମୋ' ହାତରେ ତ ଏତେବଡ଼ କାତଟାଏ ଅଛି, ଏ ଯୁବକ ପାଖରେ ହାତ ହତିଆର କିଛି ନାହିଁ । ମୁଁ ଯଦି ୟାକୁ ଏଥିରେ ଗୋଟେ ପାହର ଦେବି, ସବୁ ଧନ ମୋର ହୋଇଯିବ । ଏହା ଭାବି ସେ ଯୁବକକୁ ଦେଲା ଗୋଟେ ଶକ୍ତ ପାହାର । ଗୋଟିଏ ପାହାରରେ ଯୁବକର ରାମନାମ ସତ୍ୟ ହୋଇଗଲା । ନାଉରୀଆ ତା ମୃତଦେହକୁ ନଈ ଭିତରକୁ ଠେଲିଦେଇ ନାଆ କୂଳଆଡ଼କୁ ବାହି ନେଲା ।

Source: Author, Digitized by PPRACHIN, SOA

ନାଆରେ ଘଟିଥିବା ସବୁ ଘଟଣା କୂଳରେ ଠିଆହୋଇ, ନଇଁରନଇଁରେ ଦେଖୁଥିଲେ ରାଜାଙ୍କ ଗୁପ୍ତଚର । ସେ ସଙ୍ଗେ ସଙ୍ଗେ ନାଉରୀକୁ ଗିରଫ କରି ଦରବାରକୁ ନେଇଗଲେ । ସିନ୍ଦୁକ ମଧ୍ୟ ବୁହାହୋଇ ଗଲା । ରାଜା ସବୁ ଘଟଣା ଶୁଣିବା ପରେ ସିନ୍ଦୁକରର ଚାବି ଖୋଲିବାକୁ ଆଦେଶ ଦେଲେ । କିନ୍ତୁ ନିର୍ଦ୍ଦିଷ୍ଟ ନମ୍ବର ନ'ଜାଣିଲେ ଚାବି




ଖୋଲିବା ସମ୍ଭବ ନଥିଲା । କେହି ଖୋଲିପାରିଲେନି । ଏହା ଦେଖି ରାଜାଙ୍କ କୌତୁହଳ ବଢ଼ିବାକୁ ଲାଗିଲା । ସେ ରାଜ୍ୟରେ ସବୁଠୁ ବଡ଼ ଚାବି ବିଶେଷଜ୍ଞଙ୍କୁ ଡକାଇଲେ । ବିଶେଷଜ୍ଞ ମଧ୍ୟ ବହୁତ ଚେଷ୍ଟା କଲେ, ପାରିଲେନି । କିନ୍ତୁ ସିନ୍ଦୁକ ଏପଟ ସେପଟ କରୁ କରୁ ତା ଗୁପ୍ତ ଫାଙ୍କରୁ କାଗଜ ଖଣ୍ଡିକ ଗଳିପଡ଼ିଲା । ଚିତ୍ର ବିଚିତ୍ର କାଗଜଟି ଦେଖି ଚାବି ବିଶେଷଜ୍ଞ କିଛି ବୁଝିପାରିଲେନି, କାଗଜଟି ରାଜାଙ୍କୁ ଦେଲେ । ରାଜା ମଧ୍ୟ କିଛି ବୁଝି ନ'ପାରି ମନ୍ତ୍ରୀଙ୍କୁ ଦେଲେ । ମନ୍ତ୍ରୀ ବଢ଼ାଇଲେ ରାଜ ପଣ୍ଡିତଙ୍କ ହାତକୁ । ପଣ୍ଡିତେ କାଗଜ ଖଣ୍ଡକୁ ଭଲରୂପେ ଦେଖିଲେ । ସେଥିରେ ଗୋଟେ ବୁଢ଼ିଆଣୀ ଜାଲ ପରି ଚିତ୍ର, ତା' ଭିତରେ କିଛି ସଂଖ୍ୟା ଏବଂ ତଳେ କିଛି ଲେଖା ହୋଇଥିଲା । ପଣ୍ଡିତ କହିଲେ, ''ହଜୁର, ଏ ଗୋଟିଏ ଅଙ୍କ ଖେଳ । ଏ ବୁଢ଼ିଆଣୀ ଜାଲ ଚିତ୍ରରେ ମଝି ଘରକୁ

Source: Author, Digitized by PPRACHIN, SOA

ଛାଡ଼ିଦେଲେ ମୋଟ ଚବିଶଟି କୋଠରି ଅଛି । ତା'ଭିତରୁ ତେଇଶିଟି କୋଠରିରେ ସଂଖ୍ୟା ଲେଖା ଅଛି, ଗୋଟିଏ କୋଠରି ଖାଲି ଅଛି । ଠିକ୍ ହିସାବ କରି ଖାଲି ଘରଟିକୁ ପୂର୍ଣ୍ଣ କରିବାକୁ ପଡ଼ିବ । ସେଠାରେ ତିନିଅଙ୍କ ବିଶିଷ୍ଟ ଯେଉଁ ସଂଖ୍ୟାଟି ବସିବ, ସେଇ ସଂଖ୍ୟାରେ ହିଁ ସିନ୍ଦୁକର ଗୁପ୍ତଚାବି ଖୋଲିବ । ଏ ଲେଖାକୁ ପଢ଼ିଲେ ହିଁ ଜଣାଯାଉଛି । ପଣ୍ଡିତେ ପଢ଼ିଲେ :

ଚବିଶି କୋଠରୀ ଜାଲ ବୁଣି
ମଝିରେ ଛକିଚି ବୁଢ଼ିଆଣୀ
ଗୋଟିଏ କୋଠରୀ ରହିଛି ଖାଲି
ତାସଂଖ୍ୟା ଯାଇଛି ସିନ୍ଦୁକ ଖୋଲି ।

ରାଜା କହିଲେ, ''ତୁମେ ତ ପଣ୍ଡିତ, ତୁମେ ହି କୁହ ସେ ଘରେ କେଉଁ ସଂଖ୍ୟା ବସିବ ? ପଣ୍ଡିତ ବହୁତ ଚେଷ୍ଟା କଲେ, କିନ୍ତୁ ସେ ଅଙ୍କ ଖେଳର ଆଦି ଅନ୍ତ ଧରିପାରିଲେନି । ରାଜାଙ୍କର ଆଉ ଧୈର୍ଯ୍ୟ ନଥିଲା । ସେ କହିଲେ, ଠିକ୍ ଅଛି । ରାଜ୍ୟରେ ତୁମଠାରୁ ବଡ଼ ପଣ୍ଡିତ କିଏ ଅଛି ଦେଖିବା । ରାଜ୍ୟସାରା ଘୋଷଣା କରିଦିଅ, ଏ ଅଙ୍କ ରହସ୍ୟର ସମାଧାନ କରି ସିନ୍ଦୁକର ଚାବି ଯିଏ ଖୋଲିଦେବ, ତାକୁ ବହୁତ ପୁରସ୍କାର ଦିଆଯିବ ।''

ରାଜାଙ୍କ ଘୋଷଣାପତ୍ର ରାଜ୍ୟସାରା ଶୁଣାଇ ଦିଆଗଲା । ତା' ସହିତ ଅଙ୍କ ଖେଳର ଚିତ୍ରଟି ମଧ୍ୟ ବଣ୍ଟାଗଲା । ଘୋଷଣାପତ୍ର ଯାଇ ପହଞ୍ଚିଲା ସୁବର୍ଣ୍ଣପୁର ଗାଁ ରେ । ସୋନୁରାମ ସେଠ୍‌ଙ୍କ ପୁଅ ସୁବ୍ରତର ସେ ବର୍ଷ ସପ୍ତମଶ୍ରେଣୀ । ଅଙ୍କ ପାଠରେ ଶ୍ରେଣୀର ସମସ୍ତଙ୍କଠାରୁ ଆଗୁଆ । ସେ ଅଙ୍କଖେଳର ଶୂନ୍ୟକୋଠରି ପୂରଣ କରିବାକୁ ଚେଷ୍ଟାକଲା । ଦେଖିଲା ଗୋଟିଏ ନିର୍ଦ୍ଦିଷ୍ଟ ନୀୟମ ପ୍ରୟୋଗ କଲେ ଖାଲିଥିବା କୋଠରିରେ ଗୋଟିଏ ତିନିଅଙ୍କ ବିଶିଷ୍ଟ ସଂଖ୍ୟା ବସୁଛି । ଅର୍ଥାତ୍ ସେହି ସଂଖ୍ୟା ଘୂରାଇଲେ ହିଁ ସିନ୍ଦୁକର ଚାବି ଖୋଲିବ ।

ସୁବ୍ରତ ଖୁସି ମନରେ ଯାଇ ପହଞ୍ଚିଲା ରାଜ ଦରବାରରେ । ପ୍ରଥମେ ସେ ଅଙ୍କ ଖେଳଟିର ସମାଧାନ କିପରି ହେବ ରାଜାଙ୍କୁ ବୁଝାଇଦେଲା । ରାଜା ଖୁସି ହେଲେ । ସେ ତାକୁ ସେହି ନମ୍ବର ଘୂରାଇ ଚାବି ଖୋଲିବାକୁ ନିର୍ଦ୍ଦେଶ ଦେଲେ । ଆଶ୍ଚର୍ଯ୍ୟର କଥା; ଗୋଟିଏ ସେକେଣ୍ଡରେ ସୁବ୍ରତ ଚାବିଟି ଖୋଲିଦେଲା । ଏହା ଦେଖି ସମଗ୍ର ରାଜସଭା

Source: Author, Digitized by PPRACHIN, SOA

ଟଟାଘ । ସମସ୍ତେ ସୁବ୍ରତକୁ ବାଃ ବାଃ କଲେ । ସିନ୍ଦୁକ ଖୋଲି ରାଜା ତା'ଭିତରେ ଯାହା ଦେଖିଲେ, ତାଙ୍କ ଆଖି ଖୋସି ହୋଇଗଲା । ସେ ସୁବ୍ରତ ଉପରେ ଏତେ ଖୁସି ହୋଇଥିଲେ ଯେ ସିନ୍ଦୁକରେ ଥିବା ସବୁ ଧନ ତାକୁ ଉପହାର ରୂପେ ଦେଇଦେଲେ ।

ସୁବ୍ରତ ଅଳଙ୍କାର ସିନ୍ଦୁକ ନେଇ ଗାଁକୁ ଗଲା । ତାଙ୍କ ଗୁମାସ୍ତା ଅଳଙ୍କାର ତର୍କ ଦେଖି କହିଲେ, "ଏ ଧନ ତମ ବାପା ଗାଁ ଲୋକଙ୍କ ଠାରୁ ବନ୍ଧକ ରଖିଥିବା ଧନ । ଯାହା ଦିନେ ସୁଧୀର ଚୋରି କରି ନେଇଥିଲା ।" ସୁବ୍ରତ ସଙ୍ଗେ ସଙ୍ଗେ ଗାଁ ଲୋକଙ୍କୁ ଡାକି ସେମାନଙ୍କ ସୁନା ଅଳଙ୍କାର ମାନ ଫେରାଇଦେଲା । ଗାଁ ଲୋକେ ସୁବ୍ରତକୁ ଧନ୍ୟ ଧନ୍ୟ କଲେ ।

ପିଲାମାନେ, ସୁବ୍ରତ ସପ୍ତମଶ୍ରେଣୀରେ ପଢ଼ି ଯଦି ଏ ଅଙ୍କ ଖେଳଟି ସମାଧାନ କରି ଗୁପ୍ତଚାବି ଖୋଲି ପାରିଲା, ତୁମେ କ'ଣ ପାରିବନି ? ଦେଖି, ଚେଷ୍ଟା କରି କହିଲ, କେଉଁ ଅଙ୍କରେ ସିନ୍ଦୁକ ଚାବି ଖୋଲାଯିବ ।



Source: Author, Digitized by PPRACHIN, SOA

## ।। ପଣ୍ଡିତଙ୍କ ଜୋଇଁ ଖୋଜା ।।

ରାଘବ ପଣ୍ଡିତେ ବ୍ୟାକରଣ ବିଶେଷଜ୍ଞ ଭାବରେ ବେଶ୍ ଜଣାଶୁଣା । ଓଡ଼ିଆ ସାହିତ୍ୟ ଓ ବ୍ୟାକରଣ ଉପରେ ଗବେଷଣା କରି ତିନିପା ବୟସ ଗଲାଣି ତାଙ୍କର । ବ୍ୟାକରଣ ଓ ବର୍ଣ୍ଣମାଳାକୁ ନେଇ ସେ କେତେ ଗ୍ରନ୍ଥ ଓ ବହି ମଧ୍ୟ ଲେଖିଛନ୍ତି । ଘରେ ପିଲାଟିଏ ଜନ୍ମ ହେଲେ ନାଁ ଦେବାପାଇଁ ଲୋକେ ଜ୍ୟୋତିଷଙ୍କୁ ଡାକି ପାଞ୍ଜି ପତ୍ରିକା ଦେଖାନ୍ତି । ହେଲେ ରାଘବ ପଣ୍ଡିତଙ୍କ ନୀତି କିନ୍ତୁ ଅଲଗା । ସେ ବ୍ୟାକରଣ ବହି ଖୋଜି ଅକ୍ଷର, ବର୍ଣ୍ଣ, ମାତ୍ରା, ବନାନ ଆଦିର ଯୋଗାଯୋଗ ଦେଖି ପିଲାର ନାଁ ଦିଅନ୍ତି ।

ପଣ୍ଡିତଙ୍କ ପାଞ୍ଚଝିଅ, ପୁଅଟିଏ ନାହିଁ । ହେଲେ ତାଙ୍କ ମନରେ ଦୁଃଖ ନଥାଏ । ଝିଅ ମାନଙ୍କ ନାଁ ସେ ତାଙ୍କ ବ୍ୟାକରଣ ସୂତ୍ର ଅନୁସାରେ ହିଁ ରଖିଛନ୍ତି । ପ୍ରଥମଝିଅ କୁମୁଦିନୀ, ତା'ତଳକୁ ଚନ୍ଦନା, ତୃତୀୟ ଟିକିଲୀ, ଚତୁର୍ଥ ଝିଅର ନାଁ ତିଲୋତ୍ତମା ଏବଂ ସବା ସାନଝିଅ ପଦ୍ମାବତୀ । ବ୍ୟାକରଣର କେଉଁ ନୀତି ବା କେଉଁ ସୂତ୍ର ଅନୁସାରେ ଏ ନାଁ ରଖାଯାଇଛି, ତାହା କେବଳ ପଣ୍ଡିତେ ହିଁ ଜାଣନ୍ତି । ଆମ ତୁମପରି ସାଧାରଣ ଲୋକଙ୍କ ପକ୍ଷରେ ଏ ରହସ୍ୟ ବୁଝିବା ସହଜ ନୁହେଁ ।

ପାଞ୍ଚଝିଅ ମଧ୍ୟରୁ ଚାରିଝିଅଙ୍କ ବାହାଘର ସରିଲାଣି, କେବଳ ତୃତୀୟ ଝିଅ ଟିକିରୀ ପାଇଁ ବରଖୋଜି ସେ ପାଉନାହାନ୍ତି । ତାଙ୍କ ବ୍ୟାକରଣ ସୂତ୍ର ଅନୁସାରେ ଟିକିରୀ ନାଁ ସହିତ ଯେଉଁ ନାଁ ମେଳ ଖାଇବ ସେପରି ପିଲା ମିଳିବା କାଠିକର ପାଠ । ତଥାପି ପଣ୍ଡିତେ ନିରାଶ ହେଇନାହାନ୍ତି ।

ଅନ୍ୟ ଚାରିଝିଅଙ୍କ 'ବର-ପାତ୍ର' ମଧ୍ୟ ଠିକ୍ ଏଇ ବ୍ୟାକରଣ ସୂତ୍ର ଅନୁସାରେ ହିଁ ବଛାଯାଇଛି । ପ୍ରଥମ ଝିଅ କୁମୁଦିନୀର ବାହାଘର ପାଇଁ ଯେତେବେଳେ କଥା ଉଠିଲା, ଭଲ ଭଲ ପ୍ରସ୍ତାବ ମାନ ଆସି ପହଞ୍ଚିଲା । ବ୍ୟାଙ୍କ୍ ଅଫିସର ବିନୋଦ, କମ୍ପ୍ୟୁଟର୍ ଇଞ୍ଜିନିୟର କିରଣକୁମାର, କମ୍ପାନୀ ସେକ୍ରେଟାରୀ ନିଶାନ୍ତ, ଏମିତି ଆଉରି କେତେ ଉତ୍ତମ ପ୍ରସ୍ତାବ । ହେଲେ ପଣ୍ଡିତଙ୍କ ବ୍ୟାକରଣ ସୂତ୍ର ଆଗରେ ସମସ୍ତେ କାଟ

Source: Author, Digitized by PPRACHIN, SOA

ଖାଇଗଲେ । ଶେଷରେ ଘନଶ୍ୟାମ ନାମକ ଜଣେ ପ୍ରାଥମିକ ସ୍କୁଲ ଶିକ୍ଷକଙ୍କୁ ପଣ୍ଡିତେ ମନୋନୀତ କଲେ ଜ୍ୱାଇଁ ରୂପେ । ଯା'ହେଉ କୁମୁଦିନୀ ଓ ଘନଶ୍ୟାମ ଏବେ ଘର ସଂସାର କରି ଭଲରେ ଅଛନ୍ତି ।



ଠିକ୍ ସେମିତି, ଦ୍ୱିତୀୟ ଝିଅ ଚନ୍ଦନା ପାଇଁ ନିରଞ୍ଜନ, ଆନନ୍ଦ, ଚନ୍ଦ୍ରକାନ୍ତ, ଏପରି ବହୁତ ନାଁ ଆସିଲା । ସମସ୍ତେ ଉଚ୍ଚ ଚାକିରିଆ, ବଡ଼ ଘର ପିଲା । ପଣ୍ଡିତେ କିନ୍ତୁ ବାଛିଲେ ଝୁଗୁଡୁ ନାମକ ଜଣେ ପରିବା ଦୋକାନୀ ଟୋକାକୁ ।

Source: Author, Digitized by PPRACHIN, SOA

ଚନ୍ଦନା ସହିତ ଝୁଗୁଡୁ ନାଁର କୁଆଡ଼େ ଅପୂର୍ବ ମେଳ ଅଛି । ପଣ୍ଡିତଙ୍କ ଏ ବିଚିତ୍ର ଗଣନା ପଦ୍ଧତି ଦେଖି ଗାଁ ଲୋକେ ବେଳେ ବେଳେ ତାଙ୍କୁ ବ୍ୟାକରଣ ବାୟା କହନ୍ତି । ଯେ ଯାହା କହୁପଛେ, ପଣ୍ଡିତେ କିନ୍ତୁ ନିଜ ନୀତିରେ ପୁରାପୁରି ଅଟଳ ।

ଟିକିଲୀ ପାଇଁ ସିନା ସେ ବର ଖୋଜି ପାଇ ନାହାନ୍ତି, ହେଲେ ତା'ତଳକୁ ଦୁଇଝିଅ ତିଳୋତ୍ତମା ଆଉ ପଦ୍ମାବତୀ, ଏ ଦୁହିଁଙ୍କ ପାଇଁ ବରପାତ୍ର ବଡ଼ ସହଜରେ ମିଳିଯାଇଥିଲା । ତିଳୋତ୍ତମା ବାହା ହୋଇଛି 'ଧୀରେନ୍ଦ୍ର' ନାମକ ଜଣେ ମିଲିଟାରୀ ଜବାନକୁ । ପଦ୍ମାବତୀର ସ୍ୱାମୀ 'ଭାବଗ୍ରାହୀ' ସେକ୍ରେଟେରିଏଟ୍ କିରାଣି । ଯା'ହେଉ ସବୁଝିଅ ସୁଖରେ ଅଛନ୍ତି ।

ପଣ୍ଡିତେ ଏବେ ଟିକିଲୀ ପାଇଁ ଚିନ୍ତିତ । ତା'ପାଇଁ ଇତି ମଧ୍ୟରେ ଚାରୋଟି ଭଲ ପ୍ରସ୍ତାବ ଆସିଥିଲେ । ହେଲେ ପଣ୍ଡିତଙ୍କ ବ୍ୟାକରଣ ସୂତ୍ର ଅନୁସାରେ ସମସ୍ତେ କାଟ ଖାଇଗଲେ । କାରଣ ପାତ୍ରମାନଙ୍କ ନାଁ ଥିଲା ଯଥାକ୍ରମେ ବଂଶିଧର, ଶୁଭଙ୍କର, ନରେନ୍ଦ୍ରନାଥ, ଅମିୟ କୁମାର । ପଣ୍ଡିତଙ୍କ ସୂତ୍ର ଟିକିଲୀ ପାଇଁ କେଉଁ ନାଁର ପିଲାଟିଏ ଖୋଜୁଛି, କେହି ଜାଣି ପାରୁ ନାହାନ୍ତି ।

ପିଲାମାନେ, ତୁମେ ତ ଓଡ଼ିଆ ବର୍ଣ୍ଣମାଳା ଓ ବ୍ୟାକରଣକୁ ନେଇ ପାଠ ପଢୁଛ । ଟିକିଏ ଚିନ୍ତାକରି କହିଲ, ପଣ୍ଡିତଙ୍କ ସୂତ୍ର ଅନୁସାରେ ଟିକିରୀ ପାଇଁ କେଉଁ ନାଁ'ର ବରଟିଏ ଆବଶ୍ୟକ ? ହଁ, ଯଦି ସେ ନାଁ'ର କୈଣସି ଯୁବକକୁ ତୁମେ ଜାଣିଥାଅ, ପଣ୍ଡିତଙ୍କୁ ଖବର ଦେବ ; ନହେଲେ ବିଚାରୀ ଟିକୀରୀ ଅଭିଆଡ଼ୀ ରହିଯିବ ।



Source: Author, Digitized by PPRACHIN, SOA

## ।। ବିଜ୍ଞାନ ଖେଳ ।।

ମିଲୁ ଆଉ ସିଲୁ, ଦିନେ ବିଜ୍ଞାନ ମେଳା ଦେଖିବାକୁ ଯାଇଥିଲେ । ତାଙ୍କ ଗାଁ ହାଇସ୍କୁଲ୍ ପଡ଼ିଆରେ ମେଳା ବସିଥିଲା । ଆଖ ପାଖ ଦଶଟି ସ୍କୁଲ୍‌ର ପିଲା ମେଳାରେ ଭାଗ ନେଇଥିଲେ । ଛୋଟ ବଡ଼ ପ୍ରାୟ ତିରିଶଟି ଷ୍ଟଲ୍ ଗୋଲାକାର ଭାବେ ପଡ଼ିଆରେ ବସିଥିଲା । ପିଲାମାନେ ସଫାସୁତୁରା ୟୁନିଫର୍ମ ପିନ୍ଧି ନିଜନିଜ ଷ୍ଟଲ୍ ପାଖରେ ଠିଆ ହୋଇଥିଲେ ଏବଂ ଦର୍ଶକ ମାନଙ୍କୁ ନିଜ ନିଜ ବିଜ୍ଞାନଖେଳ ବିଷୟରେ ବୁଝାଉଥିଲେ । ଆଉ କେତେକ ପିଲା ବିଭିନ୍ନ କଉତୁକିଆ ଖେଳ ପ୍ରଦର୍ଶନ କରୁଥିଲେ ।

ମିଲୁ, ସିଲୁ ଗୋଟିଏ ପରେ ଗୋଟିଏ ଷ୍ଟଲ୍ ଦେଖି ଆଗକୁ ଚାଲିଲେ । ସେ ଦୁହେଁ ପଞ୍ଚମ ଶ୍ରେଣୀରେ ପଢ଼ନ୍ତି, ତେଣୁ ସବୁଖେଳ ବୁଝିବା ତାଙ୍କ ପକ୍ଷେ ସହଜ ନଥିଲା । ରସାୟନ ବିଜ୍ଞାନର କେତୋଟି ଖେଳ, ସେମାନେ ତ ଆଦୌ ବୁଝିପାରିଲେନି । ଗୋଟିଏ ଷ୍ଟଲ୍‌ରେ ସେମାନେ ଦେଖିଲେ, ଜଣେ ପିଲା ଧଳାକାଗଜ ଖଣ୍ଡେ ନେଇ ଆସିଲା । କାଗଜଟିକୁ ଗୋଟିଏ କାଚବକ୍ସ ଉପରେ ଚାପି ଧରିଲା । ବକ୍ସ ଭିତରେ ବଡ଼ ବଲବ ଟିଏ ଜଳୁଥାଏ । ଅଳ୍ପ ସମୟ ପରେ ଦେଖାଗଲା କାଗଜ ଉପରେ ଲାଲ ଅକ୍ଷରରେ ଲେଖା ବାହାରିଲା, ‘‘ମିଲୁ, ସିଲୁ, ବିଜ୍ଞାନମେଳା ତୁମକୁ ସ୍ୱାଗତ ଜଣାଉଛି ।’’ ଲେଖାଟି ଦେଖି ଦୁଇସାଙ୍ଗ ପୁରା ଆଶ୍ଚର୍ଯ୍ୟ ! ସତେ ଯେମିତି ମେଜିକ୍ ଖେଳ !!

ଏମାନଙ୍କ ବିସ୍ମୟ ଭାବଦେଖି ପିଲାଟି ବୁଝାଇଲା, ‘‘ଦେଖ ପିଲେ ତୁମେ ଦୁହେଁ ଯେତେବେଳ ମେଳାପଡ଼ିଆକୁ ପ୍ରବେଶ କଲ, ଗେଟ୍ ନିକଟରେ ଖାତାରେ ନିଜ ନିଜ ନାଁ ଲେଖି ଆସିଥିଲେ । ସେ ଖାତାରୁ ନାଁ ସଂଗ୍ରହ କରି ଆମେ ଏ ଖେଳଟି କରିଛୁ । କାଗଜ ଉପରେ ପ୍ରଥମରୁ ହିଁ ଏକପ୍ରକାର ରାସାୟନିକ ମହମ ସାହାଯ୍ୟରେ ଅକ୍ଷର ଗୁଡ଼ିକ ଲେଖା ହୋଇଥିଲା । ଧଳା ମହମ ହେତୁ ଜଣା ପଡୁନଥିଲା । କିନ୍ତୁ ଯେତେବେଳେ କାଗଜଟିକୁ କାଚ ଉପରେ ଚାପି ଧରି ଗରମ କଲି, ରାସାୟନିକ ପ୍ରତିକ୍ରିୟା ଯୋଗୁଁ ମହମ ଲାଲ ହୋଇଗଲା ଏବଂ ନାଲି କାଳିରେ ଲେଖିବା ପରି ଜଣା ପଡ଼ିଲା । ଏହା

Source: Author, Digitized by PPRACHIN, SOA

କେଉଁ ରାସାୟନିକ ବସ୍ତୁର ପ୍ରକ୍ରିୟା ଏବଂ କିପରି ହେଲା, ତାହା ତୁମେ ଉପର ଶ୍ରେଣୀକୁ ଗଲେ ଜାଣିପାରିବ । ଖେଳଟି ବୁଝି ନ'ପାରିଲେ ମଧ ସିଲୁ ମିଲୁ କୁ ଭାରି ମଜା ଲାଗିଥିଲା ।

ତା'ପରେ ସେମାନେ ଆଗ ଷ୍ଟଲ୍‌କୁ ଚାଲିଲେ । ସେ ଷ୍ଟଲ୍‌ରେ ଆଉ ପ୍ରକାରେ କଉତୁକିଆ ଖେଳ ଚାଲିଥାଏ । ଟେବୁଲ ଉପରେ ଥିଲା ଗୋଟେ ବଡ଼ ବେଲୁନ୍ ଏବଂ ପାଣିପିଆ ପ୍ଲାଷ୍ଟିକ୍ ବୋତଲଟିଏ । ସିଲୁ ମିଲୁକୁ ଦେଖି ଷ୍ଟଲ୍‌ରେ ଠିଆହୋଇଥିବା ପିଲାଟି




ଡାକିଲା । କହିଲା, ଦେଖ ପିଲାମାନେ, ଏ ବେଲୁନ୍‌ଟିକୁ ତୁମେ ଯଦି ବୋତଲ ଭିତରେ ପୂରାଇଦେଇ ପାରିବ, ଦଶଟଙ୍କା ପୁରସ୍କାର ମିଳିବ ।''

କଥାଟି ଶୁଣି ସିଲୁକୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । କହିଲା, ''ବେଲୁନ୍‌ଟା ତ ଏତେ ବଡ଼, ଏଡ଼ିକି ଛୋଟ ମୁହଁ ଥିବା ବୋତଲ ଭିତରେ ଏ ପଶିବ କେମିତି ? ନାଃ... ଏ କାମ ପୂରା ଅସମ୍ଭବ !

Source: Author, Digitized by PPRACHIN, SOA

ସିଲୁ କଥା ଶୁଣି ପିଲାଟି ଠିକ୍ ସେହିପରି ଆଉ ଗୋଟିଏ ବୋତଲ ଟେବୁଲ୍ ତଳୁ ଉଠାଇ ଆଣିଲା । ଆଶ୍ଚର୍ଯ୍ୟର କଥା, ସେ ବୋତଲ ଭିତରେ ଲାଲ ରଙ୍ଗର ଗୋଟେ ବଡ଼ ବେଲୁନ୍ ପୂରାଯାଇଥିଲା । ସବୁଠୁ ବଡ଼ ମଜାର କଥା ହେଲା, ବେଲୁନ୍‌ର ମୁହଁଟା ଖୋଲା ରହିଥିଲା । ବେଲୁନ୍‌କୁ ଫୁଙ୍କି ତା ମୁହଁରେ ସୂତା ବାନ୍ଧିବାକୁ ହୁଏ । ନ'ବାନ୍ଧିଲେ ବେଲୁନ୍ ଭିତରୁ ବାୟୁ ଚାଲିଯାଏ, ଏକଥା ସମସ୍ତଙ୍କୁ ଜଣା । କିନ୍ତୁ ଏଠାରେ ବୋତଲ ଭିତରେ ଯେଉଁ ବେଲୁନ୍‌ଟି ଫୁଲି ରହିଥିଲା ତା'ମୁହଁଟା ପୂରାପୂରି ଖୋଲା ଥିଲା । ବେଲୁନ୍ ମୁହଁକୁ ଓଲଟାଇ ବୋତଲ ଠିପି ଲାଗିବା ସ୍ଥାନରେ ସୂତା ଦ୍ୱାରା ଖୁବ୍ କସିକରି ବନ୍ଧାଯାଇଥିଲା । ଆଶ୍ଚର୍ଯ୍ୟର କଥା ବେଲୁନ୍ ଭିତରୁ ବାୟୁ ଚାଲି ଯାଉନଥିଲା ବରଂ ତା'ଭିତରେ ବୋତଲେ ପାଣି ରଖାହେଇଥିଲା । ପିଲାଟି ପାଣିତକ ତଳେ ଢାଳିଦେଇ କହିଲା, ''ଯଦି ତମେ କହୁଛ ଅସମ୍ଭବ, ତା'ହେଲେ ଏ' ବେଲୁନ୍ ଟା ବୋତଲ ଭିତରେ ପଶିଲା କେମିତି ?

ସିଲୁ ମିଲୁ ପାଇଁ ସତରେ ଖେଳଟା ଥିଲା ବଡ଼ କୌତୂହଳପ୍ରଦ । ମିଲୁ ଟିକିଏ ଗହିରେଇ ଚିନ୍ତାକଲା । ମନେ ମନେ ଅଳ୍ପ ହସିଲା । କହିଲା, ''କଣ ବଡ଼ଭାଇ, ତୁମଠାରୁ ଆମେ ତଳଶ୍ରେଣୀରେ ପଢୁଥିଲେ ମଧ୍ୟ ଆମକୁ ଏଡ଼େ ବୋକା ବୋଲି ଭାବନି । ବୋତଲ ଭିତରେ ତୁମେ ଫୁଙ୍କାହେଇଥିବା ବେଲୁନ୍‌ଟେ କେବେହେଲେ ପୂରାଇ ନଥିବ, ବରଂ ଅଫୁଙ୍କା ବେଲୁନ୍‌ଟିକୁ ପ୍ରଥମେ ପୂରାଇ ତା'ପରେ ତାକୁ ଫୁଙ୍କି ବଡ଼ କରି ଦେଇଥିବ ।''

ମିଲୁର କଥା ଶୁଣି ପିଲାଟି ତା'ପିଠି ଥାପୁଡ଼ି କହିଲା, ''ସାବାସ୍ ,...ସତରେ ତୁମେ ବଡ଼ ଚାଲାକ୍ ପିଲା । ଆଚ୍ଛା, ତୁମକୁ ଯଦି ଗୋଟେ ବୋତଲ ଏବଂ ବେଲୁନ୍ ଦିଆଯିବ, ଏପରି ଉପାୟରେ ଫୁଙ୍କି ତୁମେ ଦେଖାଇଦେବ'ତ ? ମିଲୁ କହିଲା, ''ନିଶ୍ଚୟ ।'' ପିଲାଟି ଟେବୁଲ୍‌ତଳୁ ଆଉ ଗୋଟିଏ ବୋତଲ ବାହାର କଲା । ତା ମୁହଁରେ ବନ୍ଧା ହୋଇଥିଲା ଗୋଟେ ଅଫୁଙ୍କା ବେଲୁନ୍ ଏବଂ ବେଲୁନ୍‌ଟା ବୋତଲ ଭିତର ଝୁଲି ରହିଥିଲା । ମିଲୁ ହାତକୁ ସେ ବୋତଲଟି ବଢ଼ାଇଦେଲା । ମିଲୁ ବୋତଲ ମୁହଁରେ ପାଟି ଲଗାଇ ବେଲୁନ୍ ଫୁଙ୍କିବାକୁ ଲାଗିଲା । ଆଶ୍ଚର୍ଯ୍ୟର କଥା ଯେତେ ଜୋର୍ ଦେଇ ଫୁଙ୍କିଲେ ମଧ୍ୟ ବେଲୁନ୍ ଫୁଲିଲାନି । ମିଲୁ ହାତରୁ ବୋତଲଟି ଆଣି ସିଲୁ ଚେଷ୍ଟା କଲା, ସେ ମଧ୍ୟ ପାରିଲାନି । ଫୁଙ୍କି ଫୁଙ୍କି ଦୁହେଁ ଅଣନିଃଶ୍ୱାସୀ ହୋଇଗଲେ ତଥାପି ବେଲୁନ୍‌ଟା ଟିକିଏ ବି ବଡ଼ କରିପାରିଲେନି । ଏ ଦୁହିଁଙ୍କ ଝାଳ ନାଳ ଅବସ୍ଥା ଦେଖି ଦେଖଣାହାରୀଙ୍କ ମଧ୍ୟରୁ

Source: Author, Digitized by PPRACHIN, SOA

ଜଣେ ବଳୁଆ ପିଲା ବାହରି ଆସିଲା । ସିଲୁ ମିଲୁକୁ ପଛକୁ ଠେଲିଦେଇ ବୋତଲଟାକୁ ନିଜେ ଆଣି ଫୁଙ୍କିବାକୁ ଲାଗିଲା । ସେ ମଧ୍ୟ ହାର ମାନିଲା । କେହି କିଛି ବୁଝିପାରିଲେନି, ଏହାର ରହସ୍ୟ କଣ !

ଶେଷରେ ସିଲୁମିଲୁ ଷ୍ଟଲ୍‌ର ପିଲାଟିକୁ ପଚାରିଲେ, ''ବଡ଼ଭାଇ ଆମେ ହାରିଲୁ । ହେଲେ ବୋତଲ ଭିତରେ ବେଲୁନ୍ ନ'ଫୁଲିବାର ବୈଜ୍ଞାନିକ କାରଣଟା କଣ ଆମକୁ ଟିକିଏ କହିଦିଅ ।

ପିଲାଟି କହିଲା, ''ନିଶ୍ଚୟ କହିବି । ହେଲେ ତା'ଆଗରୁ ତୁମେ ଏ ସମ୍ପର୍କରେ ଗଭୀର ଭାବେ ଟିକିଏ ଚିନ୍ତା କର । ଯଦି ବୋତଲ ଭିତରେ ବେଲୁନ୍ ଫୁଲିବା ସମ୍ଭବ ନୁହେଁ, ଆମେ ପୁଣି ଫୁରାଇଲୁ କେମିତି ? ଘରକୁ ଯାଇ ଆଜି ତୁମେ ଦୁହେଁ ପୁଣିଥରେ ଚେଷ୍ଟା କରିବ, ଚିନ୍ତା କରିବ । ଯଦି ନ'ପାରିବ, କାଲି ଆସିଲେ ମୁଁ ତାର କାରଣ ବୁଝାଇଦେବି ।

ସିଲୁମିଲୁ ଦୁହେଁ ଘରକୁ ଯାଇ ପୁଣି ଚେଷ୍ଟା କଲେ । ଚିନ୍ତାକଲେ ; କିନ୍ତୁ ସେ ରହସ୍ୟର ଆଦି ଅନ୍ତ ପାଇଲେନି । ଆଚ୍ଛା ପିଲାମାନେ, ଏ ଖେଳର ରହସ୍ୟ କଣ ତୁମେ କିଛି ବୁଝିପାରୁଛ । ଏପରି ନିଜେ କରି ଦେଖ, କାରଣଟା ନିଶ୍ଚୟ ଜାଣି ପାରିବ ।



Source: Author, Digitized by PPRACHIN, SOA

## ।। ବିଚିତ୍ର ଭବନ ।।

ପଞ୍ଚମଶ୍ରେଣୀ ପିଲାମାନଙ୍କ ମଧ୍ୟରେ ସାଧାରଣଜ୍ଞାନକୁ ନେଇ ସରଗରମ ଆଲୋଚନା ଚାଲିଥାଏ । ଏତିକିବେଳେ ସାର୍ ଆସି ପହଞ୍ଚିଲେ । ସାର୍ କହିଲେ ପିଲାମାନେ, ତୁମେ ସବୁ ସାଧାରଣଜ୍ଞାନରେ କେତେ ଦକ୍ଷ ଆଜି ମୁଁ ପରୀକ୍ଷା କରି ଦେଖିବି । ମୁଁ ଗୋଟେ ଗପ କହୁଛି ଶୁଣ । ଗପ ଶେଷରେ ପ୍ରଶ୍ନଟିଏ ପଚାରିବି । ଯିଏ ସଠିକ୍ ଉତ୍ତର ଦେବ, ସେ ହେବ ଆଜିର 'ଚତୁର ଶିରୋମଣି' । ତା'ହେଲେ ଗପଟି ମନଦେଇ ଶୁଣ ।

ସୌଭାଗ୍ୟ ନଗରୀ ବୋଲି ଗୋଟିଏ ରାଜ୍ୟ ଥିଲା । ସେ ରାଜ୍ୟର ରାଜାଙ୍କ ନାମ ବିଚିତ୍ରସେନ । ବିଚିତ୍ରସେନ ଥିଲେ ଜଣେ ଉତ୍ତମ ଶାସକ । ପ୍ରଜାମାନଙ୍କୁ ନିଜର ସନ୍ତାନପରି ପାଳୁଥିଲେ । ପ୍ରତ୍ୟେକ ମଣିଷର କିଛି ନା କିଛି ସଉକ ଥାଏ । ରାଜା ମହାରାଜା ମାନଙ୍କ ସଉକର ମାତ୍ରା ଟା ଟିକିଏ ଅଧିକ । ବିଚିତ୍ରସେନଙ୍କ ସଉକ ଥିଲା ଦୁନିଆର ବିଚିତ୍ର ଜିନିଷ ମାନ ସଂଗ୍ରହ କରିବା । ସେଥିପାଇଁ ସେ କିଛି କର୍ମଚାରୀଙ୍କୁ ନିଯୁକ୍ତି ମଧ୍ୟ ଦେଇଥିଲେ । କର୍ମଚାରୀ ମାନେ ଦେଶ ବିଦେଶ ବୁଲି ଯେଉଁଠି ଯାହା ବିଚିତ୍ର ଜିନିଷ ଦେଖନ୍ତି ସଂଗ୍ରହ କରି ଆଣନ୍ତି । ଦିନକୁ ଦିନ ଏତେ ଜିନିଷ ସଂଗୃହିତ ହୋଇ ଆସିଲା ଯେ ରାଜ ପ୍ରାସାଦରେ ଆଉ ଜାଗା ହେଲାନି ।

ରାଜା ସ୍ଥିର କଲେ ଗୋଟେ ସଂଗ୍ରହାଳୟ ପ୍ରତିଷ୍ଠା କରିବେ । ସଂଗୃହିତ ବିଚିତ୍ର ଜିନିଷମାନ ସେ ମହଲରେ ରଖାଯିବ, ଏବଂ ସର୍ବସାଧାରଣ ସେ ସବୁ ଦେଖିବା ସୁଯୋଗ ପାଇବେ । ସଂଗ୍ରହାଳୟର ନାଁ ରଖାଯିବ 'ବିଚିତ୍ର ଭବନ' ।

ରାଜାଙ୍କୁ କଣ ଖଞ୍ଜା ଅପୂର୍ବ ! ସଙ୍ଗେ ସଙ୍ଗେ ସ୍ଥାନ ନିରୂପଣ ହେଲା ଏବଂ କାମ ଆରମ୍ଭ ହେଲା । ଶହ ଶହ ଶ୍ରମିକ ଦିନରାତି ଲାଗି ପଡ଼ିଲେ । ପ୍ରାୟ ତିନିମାସ ବେଳକୁ ବିଚିତ୍ର ଭବନର ମୂଳଦୂଆ କାମ ଶେଷ ହେଲା । କିନ୍ତୁ ଦୁର୍ଭାଗ୍ୟର କଥା, ଠିକ୍ ସେହି ସମୟକୁ ବିଚିତ୍ରସେନ କୌଣସି ଅଜଣା ରୋଗରେ ପଡ଼ି ମୃତ୍ୟୁ ବରଣ କଲେ ।

Source: Author, Digitized by PPRACHIN, SOA

ରାଜାଙ୍କ ମୃତ୍ୟୁ ବେଳକୁ ରାଜକୁମାର ବିନୟସେନ ମାତ୍ର ପନ୍ଦର ବର୍ଷର ତରୁଣ । ରାଜ୍ୟ ପରିଚାଳନା କରିବା ପାଇଁ ମନ୍ତ୍ରୀ କିମ୍ବା ସେନାପତି ଯୋଗ୍ୟ ନଥିଲେ । ତେଣୁ ରାଜ୍ୟରେ ଅରାଜକତା ଦେଖାଦେଲା । ଏହି ସୁଯୋଗକୁ ଅପେକ୍ଷା କରି ରହିଥିଲା ପଡ଼ୋଶୀ ଶତ୍ରୁରାଜା ଦୁର୍ଜନ ସିଂହ ।

ଦୁର୍ଜନ ସିଂହ ସୌଭାଗ୍ୟ ନଗର ଆକ୍ରମଣ କଲା । ଅକ୍ଲେଶରେ ଜୟଲାଭ କଲା । ରାଣୀ ନାବାଳକ କୁମାର ବିନୟସେନଙ୍କୁ ଧରି ନିଜ ପିତୃରାଜ୍ୟକୁ ଲୁଚିକରି ଚାଲିଗଲେ । ତା'ପରେ ସୌଭାଗ୍ୟ ନଗରରେ ଆରମ୍ଭ ହେଲା ଦୁର୍ଜନ ସିଂହର କଠୋର



ଶାସନ । ରାଜ୍ୟବାସୀ କିନ୍ତୁ ଦୁର୍ଜନ ସିଂହକୁ ରାଜାରୂପେ ମାନିବାକୁ ପ୍ରସ୍ତୁତ ନଥିଲେ । ତେଣୁ ରାଜ୍ୟରେ ପ୍ରଜା ଅଶାନ୍ତି ଲାଗି ରହିଲା । ଅନ୍ୟାୟ ଅତ୍ୟାଚାର ବଢ଼ିଚାଲିଲା । ଅରାଜକତା ବ୍ୟାପିଲା । ଏହିପରି ପ୍ରାୟ ପାଞ୍ଚବର୍ଷ କଟିଗଲା । ଶେଷରେ ଦୁର୍ଜନ ସିଂହ ଭାବିଲା ଯେ ପ୍ରଜାମାନଙ୍କୁ ଖୁସି କରିବାକୁ ହେଲେ ତାକୁ କିଛି ପ୍ରଜାହିତକର କାମ କରିବାକୁ ପଡ଼ିବ । ଏହା ଭାବି ସେ ରାଜ୍ୟସାରା କୁଅ ପୋଖରୀ ଖୋଳାଇବା ଆରମ୍ଭ

Source: Author, Digitized by PPRACHIN, SOA

କଲା । ରାସ୍ତାଘାଟ, ପାନ୍ଥଶାଳା, ଆଦି ନିର୍ମାଣ କରାଇଲା । ସେତିକିବେଳେ ସେ ଦେଖିଲା ବିଚିତ୍ର ଭବନର କାମ ମୂଳଦୁଆରୁ ବନ୍ଦ ରହିଛି । ସେ କାମଟି ମଧ୍ୟ ସମ୍ପୂର୍ଣ୍ଣ କରିବା ପାଇଁ ସେ ସ୍ଥିର କଲା । ରାଜ୍ୟର ବଛା ବଛା ମିସ୍ତ୍ରୀ ବାସ୍ତୁଶିଳ୍ପୀ ଏବଂ ଶ୍ରମିକମାନଙ୍କୁ ଦିନରାତି କାମରେ ଲଗାଗଲା । ତିନିମାସ ଭିତରେ ଗୋଟିଏ ସୁନ୍ଦର କାରୁକାର୍ଯ୍ୟ ପୂର୍ଣ୍ଣ ମହଲ ନିର୍ମାଣ ହୋଇଗଲା । କେବଳ ତା ଛାତଟି ପଡ଼ିବାକୁ ଯାହା ବାକିଥିଲା । ଠିକ୍ ସେତିକିବେଳେ ସୌଭାଗ୍ୟ ନଗରୀର ଭାଗ୍ୟ ପୁଣିଥରେ ପରିବର୍ତ୍ତନ ହେଲା ।

ଇତି ମଧ୍ୟରେ ରାଜକୁମାର ବିନୟସେନ ଯୁବକରେ ପରିଣତ ହୋଇ ସାରିଥାନ୍ତି । ଯୁଦ୍ଧ ବିଦ୍ୟାରେ ମଧ୍ୟ ପାରଙ୍ଗମ । ଶତ୍ରୁରାଜା କବଳରେ ଥିବା ଜନ୍ମଭୂମି 'ସୌଭାଗ୍ୟ-ନଗରୀର' ମୁକ୍ତି ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ଅଜାଙ୍କ ସହାୟତାରେ ଏକ ଦୁର୍ଦ୍ଧର୍ଷ ସେନା ବାହିନୀ ଗଠନ କରି ଅଚାନକ ଦିନେ ସେ, ସୌଭାଗ୍ୟ ନଗରୀ ଆକ୍ରମଣ କଲେ । ତାଙ୍କୁ ରାଜ୍ୟବାସୀଙ୍କ ସହାୟତା ମଧ୍ୟ ମିଳିଲା । ଅନାୟାସରେ ସେ ଜୟଲାଭ କଲେ । ପରାଜିତ ଦୁର୍ଜ୍ଜନ ସିଂହ ବନ୍ଦି ହେଲା । ସୌଭାଗ୍ୟ ନଗରୀର ସୌଭାଗ୍ୟ ପୁଣି ଫେରିଆସିଲା । ରାଜ୍ୟରେ ପୁଣି ସୁଶାସନ ଆରମ୍ଭ ହେଲା । ବିନୟସେନ ଦେଖିଲେ 'ବିଚିତ୍ର ଭବନ' ଇତିମଧ୍ୟରେ ସୁନ୍ଦର ରୂପନେଇ ଠିଆ ହେଇଛି । କେବଳ ଛାତଟି ପଡ଼ିନି । ସେ ତତ୍‌କ୍ଷଣାତ ଲୋକଙ୍କୁ ସେ କାମରେ ଲଗାଇଦେଲେ । ବିଚିତ୍ର ଭବନର ମୁଣ୍ଡି ମରାଗଲା । ରାଜମହଲରେ ଯାହା କିଛି ବିଚିତ୍ର ଜିନିଷ ଗଦା ହୋଇଥିଲା ସେ ସବୁ ଆଣି ସେ ବିଚିତ୍ର ଭବନରେ ରଖାଇଲେ ଏବଂ ତାହା ସର୍ବ ସାଧାରଣଙ୍କ ପାଇଁ ଖୋଲା ରହିଲା । ବାପାଙ୍କ ଶେଷ ଇଚ୍ଛା ପୂରଣ କରିପାରିଥିବା ହେତୁ ପ୍ରଜାମାନେ ବିନୟସେନଙ୍କୁ ଧନ୍ୟଧନ୍ୟ କହିଲେ । ଏଠି ମୋ' କଥାଟି ସରିଲା'।

ପିଲାମାନେ, ଏବେ ତୁମକୁ ମୋ ପ୍ରଶ୍ନ, ବିଚିତ୍ର ସେନଙ୍କ ଅମଳରେ ବିଚିତ୍ର ଭବନର ମୂଳଦୁଆ ପଡ଼ିଲା, ଦୁର୍ଜ୍ଜନ ସିଂହ ଅମଳରେ ଭବନ ନିର୍ମାଣ ହେଲା ଏବଂ ବିନୟସେନଙ୍କ ଅମଳରେ ମୁଣ୍ଡିମରା ହେଲା । ତା'ହେଲେ ବିଚିତ୍ର ଭବନର ପ୍ରକୃତ ନିର୍ମାତା ଆମେ କାହାକୁ କହିବା ?

ପିଲାମାନେ ମନଦେଇ ଗପଟି ଶୁଣୁଥିଲେ ; କିନ୍ତୁ ପ୍ରଶ୍ନଟି ଶୁଣିବା ପରେ ଭକୁଆ ପାଲଟି ଗଲେ । ନିଜ ନିଜ ଭିତରେ ଯୁକ୍ତିତର୍କ ଆରମ୍ଭ କରିଦେଲେ । ଜଣେ ପିଲା ଉଠି କହିଲା, ସାର୍ ମୋ'ମତରେ ବିଚିତ୍ରସେନଙ୍କୁ ହିଁ ବିଚିତ୍ର ଭବନର ନିର୍ମାତା କୁହାଯିବ, କାରଣ ବିଚିତ୍ର ଜିନିଷ ସଂଗ୍ରହ କରିବା ସଉକ ତାଙ୍କର ଥିଲା । ବିଚିତ୍ର ଭବନ ନିର୍ମାଣ

Source: Author, Digitized by PPRACHIN, SOA

କରିବା ପରିକଳ୍ପନା ମଧ୍ୟ ତାଙ୍କର । ମୂଳଦୁଆ ମଧ୍ୟ ତାଙ୍କ ଅମଳରେ ପଡ଼ିଥିଲା । ସେ ଯଦି ବଞ୍ଚିଥାନ୍ତେ ବିଚିତ୍ର ଭବନ ନିଶ୍ଚୟ ପୂରା କରିଥାନ୍ତେ । ତେଣୁ ବିଚିତ୍ର ଭବନର ନିର୍ମାତା ତାଙ୍କୁ ହିଁ କୁହାଯିବ ।

ଆଉ ଜଣେ ପିଲା ଉଠି କହିଲା, "ନା ସାର୍ ପ୍ରକୃତ ନିର୍ମାତା ଦୁର୍ଜ୍ଜନ ସିଂହକୁ କୁହାଯିବ । ଶତ୍ରୁରାଜା ହେଲେ ମଧ୍ୟ ଅଧାହେଇ ପଡ଼ିଥିବା କାମକୁ ସେ ଶେଷ କରିଛି । ଭବନର ଅସଲ ନିର୍ମାଣ କାର୍ଯ୍ୟ ତା ଅମଳରେ ହେଇଛି । ତେଣୁ ତାକୁହିଁ କୁହାଯିବ ପ୍ରକୃତ ନିର୍ମାତା ।

ଶେଷରେ ଆଉ ଜଣେ ପିଲା ଉଠି ବିନୟସେନଙ୍କ ସପକ୍ଷରେ ଯୁକ୍ତି କରି କହିଲା ଯେ ମୁଣ୍ଡି ମାରିଥିବା ରାଜାକୁ ହିଁ ଅସଲ ନିର୍ମାତା କୁହାଯିବ ।

ଏବେ, ଏଗପଟି ପଢୁଥିବା ପିଲାମାନଙ୍କୁ ମୋର ପ୍ରଶ୍ନ, ଏ ତିନିଜଣ ପିଲାଙ୍କ ମଧ୍ୟରୁ ସଠିକ୍ ଉତ୍ତର କିଏ ଦେଇଛି ? ନା ଏହାର ସଠିକ୍ ଉତ୍ତର ଆଉ କିଛି ହେଇପାରେ ?



Source: Author, Digitized by PPRACHIN, SOA

## ।। ବଢ଼ିବ ନା କମିବ ।।

ତୁମରି ପରି ପିଲାଟିଏ । ନାଁ ତା'ର ରଞ୍ଜନ । ରଞ୍ଜନ ଷଷ୍ଠ ଶ୍ରେଣୀରେ ପଢ଼େ । ବିଜ୍ଞାନ ପାଠ ପ୍ରତି ତା'ର ଭାରି ଆଗ୍ରହ । ସାର୍ ସ୍କୁଲ୍‌ରେ ବିଜ୍ଞାନ ଯାହା ପଢ଼ାନ୍ତି ସେ ଘରକୁ ଆସି ତାହା ପରୀକ୍ଷା କରି ବୁଝିବାକୁ ଚେଷ୍ଟା କରେ । ପୁଅର ଏ ଆଗ୍ରହ ଦେଖି ବାପା ନରେନ୍ଦ୍ରବାବୁ ପୁଅପାଇଁ କେତେକ ଛୋଟ ଛୋଟ ବିଜ୍ଞାନ ଉପକରଣ କିଣାଇ ଦେଇଥିଲେ ।

ଦିନେ ଶ୍ରେଣୀରେ ଆର୍କିମିଡ଼ିସ୍‌ଙ୍କ ପ୍ଲବନ ନୀୟମ ବିଷୟରେ ପଢ଼ାଗଲା । ପାଣିରେ କେତେକ ବସ୍ତୁ ଭାସେ ପୁଣି ସେଇ ଓଜନର ବସ୍ତୁ ବୁଡ଼ିଯାଏ । ଏପରି କାହିଁକି ହୁଏ । ଏସମ୍ପର୍କରେ ସାର୍ ପିଲାମାନଙ୍କୁ ବୁଝାଇଲେ । ସ୍କୁଲ୍ ଛୁଟୀ ହେବା ପରେ ରଞ୍ଜନ ଘରକୁ ଆସିଲା । ନିଜେ ଏହାର ପରୀକ୍ଷା କରି ବୁଝିବାକୁ ଚେଷ୍ଟା କଲା ।

ତାଙ୍କ ଅଗଣାରେ ପ୍ରାୟ ଚାରିବର୍ଗଫୁଟ ଆକାରର ଗୋଟେ ସିମେଣ୍ଟ କୁଣ୍ଡ ଥିଲା । ରଞ୍ଜନକୁ ସୁବିଧା ମିଳିଗଲା । ସେ କୁଣ୍ଡରେ ପ୍ରାୟ ତିନିଭାଗ ପର୍ଯ୍ୟନ୍ତ ପାଣି ଭର୍ତ୍ତିକଲା । ତା'ପରେ ରୋଷେଇ ଘରୁ ଆଣିଲା ଗୋଟେ ବଡ଼ ପିତଳ ବାଟି । ବାଟିଟିକୁ ସେ କୁଣ୍ଡରେ ଭସାଇଲା । ଛୋଟ ଗୋଟେ ହୁଲି ଡଙ୍ଗା ପରି ବାଟିଟି କୁଣ୍ଡ ପାଣିରେ ଭାସିବାକୁ ଲାଗିଲା । ଆଗରୁ ସେ କିଛି ଲୁହା ଗୋଲି ଯୋଗାଡ଼ କରିଥାଏ । ଏଥର ସେ ଭାସମାନ ବାଟି ଭିତରେ ଗୋଟି ଗୋଟି କରି ଲୁହା ଗୋଲି ପକାଇବାକୁ ଲାଗିଲା । ଗୋଲି ଯେତେ ପଡୁଥାଏ ବାଟିର ଓଜନ ସେତେ ବଢୁଥାଏ । ବାଟିଟି ସେତେ ଅଧିକ ମାତ୍ରାରେ ପାଣି ଭିତରେ ବୁଡୁଥାଏ । ବାଟି ଯେତେ ଅଧିକ ମାତ୍ରାରେ ବୁଡୁଥାଏ, କୁଣ୍ଡର ଜଳସ୍ତର ସେତେ ଅଧିକ ମାତ୍ରାରେ ଉପରକୁ ଉଠୁଥାଏ । ରଞ୍ଜନ ଗୋଟି ଗୋଟି କରି ମୋଟ ତିରିଶଟି ଗୋଲି ବାଟିରେ ପକାଇଲା । ଲକ୍ଷକଲା, ବାଟିଟି ବୁଡ଼ିବାପାଇଁ ଆଉମାତ୍ର ଦୁଇ ସେ.ମି. ବାକି ଅଛି । କୁଣ୍ଡର ଜଳସ୍ତର ମଧ୍ୟ ଢେର ଉପରକୁ ଉଠିଯାଇଛି । ଯେଉଁ ପର୍ଯ୍ୟନ୍ତ ଉଠିଥିଲା, ସେଠାରେ ସେ ଗୋଟେ ଚିହ୍ନ ଦେଲା ।

Source: Author, Digitized by PPRACHIN, SOA

ଠିକ୍ ଏତିକିବେଳେ ଗୋଟେ ଅନର୍ଥ ଘଟିଗଲା । ରଞ୍ଜନର ସାନଭାଇ ଅଞ୍ଜନ । ୩ୟ ଶ୍ରେଣୀରେ ପଢ଼େ । ଭାରି ଦୁଷ୍ଟ । ସେ ଆସି ଭାଇ କଣ କରୁଛି କହି ବାଟିରେ ଟିକେ ହାତ ମାରିଦେଲା । ସଙ୍ଗେ ସଙ୍ଗେ ବାଟିଟା ଲୁହାଗୋଲି ସହିତ ପାଣିରେ ବୁଡ଼ିଗଲା ।

ପିଲାମାନେ, ଏଠାରେ ମୋ ମନରେ ଗୋଟେ ପ୍ରଶ୍ନ ଉଠୁଛି । ବାଟି ଭାସିବା ସମୟରେ କୁଣ୍ଡର ଜଳସ୍ତର ଗୋଟେ ନିର୍ଦ୍ଦିଷ୍ଟ, ଉଚ୍ଚତାକୁ ଆସିଥିଲା ଏବଂ ରଞ୍ଜନ ସେଠାରେ ଗୋଟେ ଚିହ୍ନ ବି ଦେଇଥିଲା ।

ଅଞ୍ଜନର ଦୁଷ୍ଟାମି ଯୋଗୁଁ ବାଟିଟା ପାଣି କୁଣ୍ଡରେ ବୁଡ଼ିଗଲା । ଏବେ ଜଳସ୍ତରର ଉଚ୍ଚତା ସେଇ ଚିହ୍ନ ପର୍ଯ୍ୟନ୍ତ ରହିବ, କମିବ ନା' ବଢ଼ିବ ? ପରିକ୍ଷାଟି ଯଦି ମୁଁ ନିଜେ କରିବି, ନିଶ୍ଚୟ ଜାଣିପାରିବି; କିନ୍ତୁ ତା'ଆଗରୁ ତୁମେମାନେ ଟିକିଏ ବୁଦ୍ଧି ଖଟେଇ ଉତ୍ତର ବାହାର କରିବାକୁ ଚେଷ୍ଟା କର ।



Source: Author, Digitized by PPRACHIN, SOA

# ।। ମୋ' ଭାରତ ମହାନ୍ ।।

ପିଲାମାନେ, ସାରାଦୁନିଆରେ ଆମେ ଭାରତ ପରି ଦେଶଟେ ପାଇବାନି । ଭାରତବର୍ଷ ସତରେ ଗୋଟେ ବିଚିତ୍ର ଦେଶ । କାଶ୍ମୀର ଠାରୁ କନ୍ୟାକୁମାରୀ ଏବଂ ଦ୍ୱାରକାରୁ ପୁରୀ, ଏ' ଗୋଟେ ବିଶାଳ ଭୂ-ଖଣ୍ଡ । ନାନା ଭାଷା, ନାନାଧର୍ମ, ନାନା ରୀତି, ନୀତି ସଂସ୍କୃତି ରେ ଭରା ଏ ଦେଶ । ଏତେ ବିବିଧତା ଏତେ ବିଚିତ୍ରତା ତମେ ଅନ୍ୟ କେଉଁଠି ଦେଖିବାକୁ ପାଇବନି ।

ତମେ ଯଦି କେବେ ରେଳଗାଡ଼ିରେ ଭାରତ ଭ୍ରମଣ କରିବା ସୁଯୋଗ ପାଅ, ତା'ହେଲେ ଏ ଦେଶର ବିବିଧ-ରୂପ କୁ ଅତି ନିକଟରୁ ଦେଖି ପାରିବ । ମନେକର ତୁମେ କାଶ୍ମୀରରୁ ବାହାରିଲ, ସେଠାକାର ପରିବେଶ, ଲୋକଙ୍କ ଭାଷା, ସଂସ୍କୃତି, ବେଶପୋଷାକ, ଚାଲିଚଳନ ଯାହା ଦେଖିଥିବ, କିଛି ଦୂର ଆଗକୁ ଆସିଲେ ଆଉ ନଥିବ । ଗାଡ଼ି ଯଦି ହରିଆନା, ପଞ୍ଜାବ, ଦିଲ୍ଲୀ ଦେଇ ଦକ୍ଷିଣ ଆଡ଼କୁ ଚାଲିଛି, ପ୍ରତି ଦୁଇ/ତିନିଶହ କିଲୋମିଟର ବ୍ୟବଧାନରେ ତୁମେ ଦେଖିବାକୁ ପାଇବ ଅଲଗା ଅଲଗା ଭାଷା ଭାଷୀର ଲୋକ । ସେମାନଙ୍କ ବେଶ-ପୋଷାକ ଏବଂ ଖାଦ୍ୟ ରୁଚିରେ ମଧ୍ୟ ଥିବ ଅନେକ ପାର୍ଥକ୍ୟ ।

ଆମ ଦେଶ ଅନେକ ଗୁଡ଼ିଏ ରାଜ୍ୟକୁ ନେଇ ଗଠିତ । ନିଜ ନିଜ ଭାଷା, ସଂସ୍କୃତି, ରୀତି-ନୀତି, ପରିବେଶ, ଓ ପରମ୍ପରା ଅନୁସାରେ ପ୍ରତ୍ୟେକ ରାଜ୍ୟର କିଛି କିଛି ସ୍ୱତନ୍ତ୍ରତା ରହିଛି । ଲୋକଙ୍କ ପାରମ୍ପାରିକ ବେଶ ପୋଷାକରେ ବିଭିନ୍ନତା ରହିଛି । ପରିବେଶ ଅନୁସାରେ ଲୋକଙ୍କ ଶାରୀରିକ ଗଠନରେ ମଧ୍ୟ ପାର୍ଥକ୍ୟ ରହିଛି ।

ଯଦି ତୁମକୁ ଜଣେ କେରଳୀ, ଜଣେ ରାଜସ୍ଥାନୀ ଏବଂ ଜଣେ ପଞ୍ଜାବୀ ଲୋକଙ୍କୁ ଚିହ୍ନିବାକୁ କୁହାଯିବ । ସହଜରେ ତୁମେ ଚିହ୍ନଟ କରିଦେବ । କାରଣ ଏମାନଙ୍କ ଶାରିରୀକ ଗଠନରେ କିଛିଟା ଅନ୍ତର ଥିବ । ବେଶ-ପୋଷାକ ତ ପୂରାପୂରି ଅଲଗା । କିନ୍ତୁ ଏକଥା ସତ ଯେ, ଯିଏ ଯେଉଁ ରାଜ୍ୟର ହେଲେ ମଧ୍ୟ ଆମେ ସମସ୍ତେ ଭାରତୀୟ ।

Source: Author, Digitized by PPRACHIN, SOA

ଆମେ ଭାରତ ବର୍ଷକୁ ଜାଣିବାକୁ ହେଲେ ପ୍ରଥମେ ତା' ରାଜ୍ୟ ଗୁଡ଼ିକ ସମ୍ପର୍କରେ କିଛି କିଛି ଜାଣିବାକୁ ପଡ଼ିବ । ରାଜ୍ୟ ସମ୍ପର୍କରେ ଜାଣିବା ପାଇଁ ପ୍ରତି ରାଜ୍ୟର ଇତିହାସ କଥା, ଭୌଗୋଳିକ ସ୍ଥିତି, ସଂସ୍କୃତି ଓ ପରମ୍ପରା ଇତ୍ୟାଦି ବିଷୟରେ ଜାଣିବାକୁ ପଡ଼ିବ । ଆମଘର ଓଡ଼ିଶାରେ । ଆମ ରାଜ୍ୟର ଗାରିମାମୟ ଇତିହାସ କାହାକୁ ଅଜଣା ? ଆମ ସାଧବ ପୁଅମାନେ ଦିନେ ଦରିଆପାରି ବ୍ୟବଣିଜ କରି ଦୁନିଆରେ ନାଁ କରିଥିଲେ । ବିଶ୍ୱବିଜୟୀ ଚଣ୍ଡାଶୋକକୁ 'ଧର୍ମାଶୋକ'ରେ ପରିଣତ କରିଥିଲା ଏଇ କଳିଙ୍ଗ ମାଟି । ଏଇ ମାଟିର ମେହନତି କାରିଗର ମାନେ ବିଶ୍ୱ ବିଖ୍ୟାତ କୋଣାର୍କ ମନ୍ଦିର ତୋଳିଥିଲେ । ଏପରି ଅନେକ କଥା...... ।

ଭୌଗୋଳିକ ଦୃଷ୍ଟିରୁ ଦେଖିଲେ ଆମ ରାଜ୍ୟ ବଙ୍ଗୋପସାଗର କୂଳରେ ଅବସ୍ଥିତ । ମହାନଦୀ, ବ୍ରାହ୍ମଣୀ, ବୈତରଣୀ ପରି ଅନେକ ନଦୀ ଏବଂ ଚିଲିକା ଅଂଶୁପା ପରି ସୁନ୍ଦର ଓ ବିଶାଳ ହ୍ରଦ ମାନ ଆମ ରାଜ୍ୟର ଗୌରବ । ଆମ ସଂସ୍କୃତି ଓ ପରମ୍ପରା ମଧ୍ୟ ଗୌରବମୟ । ଆମ ବଡ଼ ଠାକୁର ସାରା ଜଗତର ଠାକୁର । ତା'ପାଇଁ ଆମ ବାରମାସରେ ତେର ପରବ । ଓଡ଼ିଆଙ୍କ ଓଷାବ୍ରତ, ପର୍ବପର୍ବାଣୀ । ଓଡ଼ିଆ ଘରେ ଝୋଟି ଚିତା, ଓଡ଼ିଆଣୀର ମଣ୍ଡା ଚିତୋଉପିଠା । ଆମ ଛଉନାଚ, ଓଡ଼ିଶୀନାଚ, ପାଇକ ଆଖଡ଼ା ଏମିତି କେତେଜଣ ..... । ମୋଟ ଉପରେ ଏସବୁର ମିଳନ ହିଁ ଆମ ଓଡ଼ିଆତ୍ୱର ପରିଚୟ । ଆମରାଜ୍ୟ ଯେପରି ଆମର ପରିଚୟ ସେମିତି ପ୍ରତ୍ୟେକ ରାଜ୍ୟ ନିଜ ନିଜ ପରିବେଶ ଓ ପରମ୍ପରାକୁ ନେଇ ପରିଚିତ ।

ପିଲାମାନେ, ଆମ ଦେଶ ଏବଂ ରାଜ୍ୟମାନଙ୍କ ସମ୍ପର୍କରେ ତୁମ ମାନଙ୍କୁ ମୁଁ ଏତେ କଥା କାହିଁକି କହୁଛି ଜାଣ ? କାରଣ ୟା' ପଛରେ ଗୋଟେ କଉତୁକିଆ କାହାଣୀ ଅଛି ଶୁଣ ।

ଥରେ ଚାରିଜଣ ଯୁବକ ରେଳଗାଡ଼ିରେ ବସି କେଉଁଆଡ଼େ ଯାଉଥିଲେ । ଚାରିହେଁ ଗୋଟିଏ ବଗିରେ ସାମନା ସାମନି ବସିଥାନ୍ତି । କିନ୍ତୁ କାହାର କାହା ସହିତ ପରିଚୟ ନଥାଏ । ଚାରିହେଁ ଚୁପ୍‌ଚାପ୍ ବସିଥାନ୍ତି । କିନ୍ତୁ ଖୁବ୍ କମ୍ ସମୟ ମଧ୍ୟରେ ସେମାନେ ପରସ୍ପର ପରିଚିତ ହୋଇଗଲେ । ସେମାନଙ୍କ ନାଁରେ ଗୋଟେ ଅଦ୍ଭୁତ ମେଳ ଥିଲା, ତେଣୁ ଘନିଷ୍ଠତା ମଧ୍ୟ ବଢ଼ିଗଲା । ଜଣକ ନାଁ ଥିଲା ହେମେନ୍ଦ୍ର ସିଂହ, ତାଙ୍କ ପାଖରେ ବସିଥିବା ଯୁବକଙ୍କ ନା ମହେନ୍ଦ୍ର ବରୁଆ, ଅନ୍ୟ ଦୁଇଜଣଙ୍କ ନାଁ ରବିନ୍ଦ୍ର କୁମାର ଓ ଦେବେନ୍ଦ୍ର ରାଓ ।

Source: Author, Digitized by PPRACHIN, SOA

ପ୍ରଥମେ ହେମେନ୍ଦ୍ର ପଚାରିଲେ ମହେନ୍ଦ୍ରଙ୍କୁ, ''ଭାଇ, ତୁମ ଘର କେଉଁଠି ?'' ମହେନ୍ଦ୍ର କହିଲେ, ''ଏମିତି କହିବାକୁ ଗଲେ, ଆମେ ସମସ୍ତେ ତ ଭାରତୀୟ । ତୁମେ ଯଦି ମୋ'



ରାଜ୍ୟର ନାଁ ଜାଣିବାକୁ ଚାହୁଁଛ, ମୁଁ ଏଡ଼େ ସହଜରେ କହିବିନି । ବରଂ ମୋ ରାଜ୍ୟ ସମ୍ପର୍କରେ ତିନୋଟି ସୂଚନା ମୁଁ ଦେବି । ତୁମେ କହିବ ମୁଁ କେଉଁ ରାଜ୍ୟର ଲୋକ ।''

Source: Author, Digitized by PPRACHIN, SOA

ମହେନ୍ଦ୍ର ଙ୍କ କଉତୁକିଆ ଯୁକ୍ତି ସମସ୍ତଙ୍କ ମନକୁ ପାଇଲା । ତିନିହେଁ ଏଥିରେ ରାଜି ହେଲେ । ସେମାନେ ମଧ୍ୟ ନିଜ ନିଜ ରାଜ୍ୟ ସମ୍ପର୍କରେ ଟିପ୍‌ପଣୀ ଦେବାପାଇଁ ମନେ ମନେ ପ୍ରସ୍ତୁତ ହେଲେ ।

ପ୍ରଥମେ ମହେନ୍ଦ୍ର ଆରମ୍ଭ କଲେ, ''ଭାରତର ଅଧିକାଂଶ ଛୋଟ ଛୋଟ ରାଜ୍ୟ ଆମରାଜ୍ୟ ସୀମାକୁ ଲାଗି କରି ରହିଛି । କାଜିରଙ୍ଗା ଜାତୀୟ ଉଦ୍ୟାନ ଆମ ରାଜ୍ୟରେ ଅଛି । ବିହୁ ଆମ ରାଜ୍ୟର ବଡ଼ ପର୍ବ । ଏବଂ ଆମ ରାଜଧାନୀର ନାମ ଦିଶ୍‌ପୁର ।

ତୁମେ କେଉଁ ରାଜ୍ୟର ବାସିନ୍ଦା ମୁଁ ଜାଣିଗଲି । ଏବେ ମୋ' କଥା ଶୁଣ, ଦେବନ୍ଦ୍ର ରାଓ କହିଲେ, ''ଭାରତ ନାଟ୍ୟମ୍' ଆମ ରାଜ୍ୟର ପାରମ୍ପରିକ ନୃତ୍ୟକଳା । ଚାରମିନାର ସୌଧ ଯେଉଁ ସହରରେ ଅଛି, ସେଇଟା ଆମ ରାଜଧାନୀ । ମୁଁ ପ୍ରତିଦିନ ସକାଳୁ ଉଠି ବଙ୍ଗୋପସାଗରରେ ସୂର୍ଯ୍ୟୋଦୟ ଦେଖେ ।''

ରବିନ୍ଦ୍ର କୁମାର ସଙ୍ଗେ ସଙ୍ଗେ ଆରମ୍ଭ କଲେ, ''ତୁମେ ଭାଇ ମୋ' ପଡ଼ୋଶୀ ରାଜ୍ୟର ଲୋକ, ଏବେ ତୁମେ କୁହ ମୁଁ କେଉଁ ରାଜ୍ୟର । ତୁମେ ସିନା ସମୁଦ୍ରରେ କେବଳ ସୂର୍ଯ୍ୟୋଦୟ ଦେଖ । ମୁଁ ସୂର୍ଯ୍ୟୋଦୟ ଏବଂ ସୂର୍ଯ୍ୟାସ୍ତ ଦୁଇଟା ଯାକ ଉପଭୋଗ କରେ । ଆମ ରାଜ୍ୟର ପୁରାତନ ନାମ ପାଣ୍ଡ୍ୟ । ନୋବେଲ୍ ପୁରସ୍କାର ବିଜେତା ବିଜ୍ଞାନୀ ସି:ଭି: ରମଣ ଆମ ରାଜ୍ୟର ଲୋକ ।

ଶେଷରେ ହେମେନ୍ଦ୍ର ସିଂହ କହିଲେ, ''ସମୁଦ୍ରରେ ସୂର୍ଯ୍ୟୋଦୟ ଦେଖିବା ତ ଦୂରର କଥା, ସମୁଦ୍ର ଦେଖିବା ମଧ୍ୟ ମୋ' ପାଇଁ ସ୍ୱପ୍ନ । କାରଣ ସମୁଦ୍ରପତ୍ତନ ଠାରୁ ପ୍ରାୟ ଅଢ଼େଇ ହଜାର ମିଟର ଉଚ୍ଚରେ ଆମ ରାଜ୍ୟ । ମୁଁ ଶୁଣିଛି, ଲୋକେ ଖରାଦିନେ ପାଣି ପାଇଁ କଷ୍ଟ ଭୋଗନ୍ତି; କିନ୍ତୁ ଆମ ରାଜ୍ୟରେ ଶୀତଦିନେ ପାଣି ମିଳିବା ମୁସ୍କିଲ୍ । ଯା'ହେଲେ ବି ଆମ ରାଜ୍ୟ ସାରା ଭାରତରେ ସ୍ୱର୍ଗପରି ଗୋଟେ ମନୋରମ ସ୍ଥାନ ।

ଚାରି ବନ୍ଧୁ ନିଜ ନିଜ ରାଜ୍ୟ ସମ୍ପର୍କରେ ଟିପ୍‌ପଣୀ ଦେଲେ ଏବଂ ଜାଣି ପାରିଥିଲେ କିଏ କେଉଁ ରାଜ୍ୟର ବାସିନ୍ଦା । ଏବେ ପିଲାମାନେ, ତୁମେ ଟିକିଏ ଭାବିଚିନ୍ତି କହିବ କିଏ କେଉଁ ରାଜ୍ୟର ଲୋକ ହୋଇଥିବ ।



Source: Author, Digitized by PPRACHIN, SOA

# ଉତ୍ତରମାଳା

## ୧) ଅପୂର୍ବ ମିଳନ :

ଉତ୍ତର : ଅଙ୍କିତ୍‌ର ଜେଜେଙ୍କ ଜନ୍ମଦିନ ୧୯୨୩ ମସିହା ଅକ୍ଟୋବର, ୨ ତାରିଖ । ଅମିତ୍‌ର ଜେଜେଙ୍କ ଜନ୍ମଦିନ ୧୯୨୩ ମସିହା ଜାନୁଆରୀ, ୨୩ ।

## ୨) ପଦକ ଚୋର :

ଉତ୍ତର : ସାଧୁ କେବଳ ଗୋଟିଏ ପ୍ରଶ୍ନର ଉତ୍ତର ଦିଏ ଏବଂ ତାହା ସର୍ବଦା ସତ ହୋଇଥାଏ । ସେ ଯେତେବେଳେ କହିଲା ''ମୁଁ ଚୋରି କରିନାହିଁ'' ଏଥିରୁ ପ୍ରମାଣିତ ହେଲାଯେ ମଧୁର ଦ୍ୱତୀୟ ଉତ୍ତର ଏବଂ ରାଧୁର ଦ୍ୱିତୀୟ ଉତ୍ତର ମିଛ ।

ମଧୁ ଗୋଟିଏ ସତ ଏବଂ ଗୋଟିଏ ମିଛ ଉତ୍ତର ଦିଏ । ଯେହେତୁ ତାର ଦ୍ୱିତୀୟ ଉତ୍ତର ମିଛ ପ୍ରମାଣିତ ହେଲା, ପ୍ରଥମ ଉତ୍ତରଟି ନିଶ୍ଚୟ ସତ । ଅର୍ଥାତ୍ ସେ ଚୋରି କରିନାହିଁ । ରାଧୁର ତିନୋଟି ଉତ୍ତରରୁ କେବଳ ଗୋଟିଏ ସତ ଏବଂ ତାହା ହେଲା ସାଧୁ ଚୋରି କଲାବେଳେ ସେ ଦେଖିନାହିଁ । ବାକି ଦୁଇଟି ମିଛ, ଅର୍ଥାତ୍ ସେ ହିଁ ଚୋରି କରିଛି ।

## ୩) ଉପସ୍ଥିତ ବୁଦ୍ଧି :

ଉତ୍ତର : ବିଜୟ ପୁଲିସ୍‌କୁ କହିଥିଲା ଯେ, ସେ ସାମ୍‌ନାରେ ଲାଗିଥିବା ଅଇନାରେ ପଛ ଗାଡ଼ିକୁ ଦେଖିଥିଲା । ଗାଡ଼ିରର ନମ୍ବର ମଧ୍ୟ ସେ ଅଇନାରେ ହିଁ ଦେଖିଥିଲା । ସେ କହିଥିବା ନମ୍ବର OHMA-୪୦୩୨ କୁ ଦର୍ପଣରେ ଦେଖିଲେ AMHO-୧୩୦୪ ହିଁ ହେବ ।

Source: Author, Digitized by PPRACHIN, SOA

## ୪) କାହାର ଯୁକ୍ତି ଠିକ୍ :

ଉତ୍ତର : ଆଗ ଚକାର ଯୁକ୍ତି ଠିକ୍। (ଯେ କୌଣସି ଦୁଇଚକିଆ ଯାନର ଆଗଚକଟି ପଛଚକ ଅପେକ୍ଷା ଅଧିକ ଗଡ଼େ କାରଣ ସେ ବଙ୍କା ତେଢ଼ା ଭାବେ ଗତି କରେ। ଏହା ତୁମେ ନିଜ ସାଇକେଲ୍‌କୁ ନେଇ ପରୀକ୍ଷା କରିପାର।)

## ୫) କୁହୁକ ନମ୍ବର :

ଉତ୍ତର : ଗାଡ଼ି ନମ୍ବର ୧୦୦୧।

## ୬) ଗୁପ୍ତଚାବି :

ଉତ୍ତର : ମଝି ଘରେ ଥିବା ସଂଖ୍ୟାଟି ତା' ଉଭୟ ପାଖରେ ମୁହାଁମୁହିଁ କୋଠରିରେ ଥିବା ସଂଖ୍ୟା ଗୁଡ଼ିକର ଯୋଗଫଳ, ବିୟୋଗଫଳ ଗୁଣଫଳ ତଥା ଭାଗଫଳ ଅଟେ। ସଂଖ୍ୟାଟି ଏବେ ନିଜେ ତିଆରି କର।

## ୭) ଜମିଦାରଙ୍କ ବିଚାର :

ଉତ୍ତର : ଜମିଦାରଙ୍କ ପାଖରେ ପୂର୍ବରୁ କାମ କରୁଥିବା ଆଠଜଣ କର୍ମଚାରୀଙ୍କ ନାମର ପ୍ରଥମ ଅକ୍ଷରର କ୍ରମିକତା ଯଥାକ୍ରମେ କ' ଖ' ଗ' ଘ' ଚ' ଛ' ଜ' ଝ, ଏହି କ୍ରମିକତାକୁ ଆଖି ଆଗରେ ରଖି ଜମିଦାର 'ଟ' ଅକ୍ଷରରେ ଆରମ୍ଭ ହେଉଥିବା 'ଟଙ୍କଧର ନାମକ ଲୋକଟିକୁ ହିଁ ନିଯୁକ୍ତି ଦେଲେ।

## ୮) ଢମଣା ନଈରେ ବନ୍ୟା :

ଉତ୍ତର : ତିନି ନମ୍ବର ଗେଟ୍ ଖୋଲିବାକୁ ପଡ଼ିବ। (ନଳାରୁ ବାହାରିବା ପାଣିର ପରିମାଣ ନଳା ଗୋଲେଇର କ୍ଷେତ୍ରଫଳ ଉପରେ ନିର୍ଭର କରେ। ଦେଢ଼ ମିଟର ବ୍ୟାସ ବିଶିଷ୍ଟ ଦୁଇଟି ନଳାର କ୍ଷେତ୍ରଫଳ ସବୁଠୁ ଅଧିକ।)

## ୯) ନାଁ କୁ ନେଇ ପ୍ରହେଳିକା :

ଉତ୍ତର : ଚିରା ଯାଇଥିବା ନାଁ ଗୁଡ଼ିକ ହେଲା –

ପ୍ରଥମ ଶ୍ରେଣୀ – ଦିନମଣି ଜେନା, ପ୍ରଭାକର ପାତ୍ର।

ଦ୍ୱିତୀୟ ଶ୍ରେଣୀ – ମାଧବଚନ୍ଦ୍ର ମହାନ୍ତି, ବନମାଳୀ ବେହେରା, ନୀଳମଣି ନାୟକ।

Source: Author, Digitized by PPRACHIN, SOA

ତୃତୀୟ ଶ୍ରେଣୀ – ମହେଶ୍ୱର ମହାନ୍ତି, ଶଶାଙ୍କ ଶେଖର ସାହୁ, ନୀଳକଣ୍ଠ ନାଏକ ।

(ବିଜ୍ଞାନ ଶିକ୍ଷକଙ୍କ ସୂଚନା ଅନୁଯାୟୀ ପ୍ରତ୍ୟେକ ଶ୍ରେଣୀରେ ପାସ୍ କରିଥିବା ପିଲାଙ୍କ ନାଁ ଗୁଡ଼ିକରେ ଗୋଟେ ଅପୂର୍ବ ସାମଞ୍ଜସ୍ୟ ରହିଛି ଏବଂ ତାହା ହେଲା ସମାର୍ଥ ବୋଧ । ପ୍ରଥମ ଶ୍ରେଣୀରେ ପାସ୍ କରିଥିବା ପିଲାଙ୍କ ନାଁ ସୂର୍ଯ୍ୟଙ୍କ ପାଞ୍ଚୋଟି ନାମ, ସେପରି ଅନ୍ୟ ଗୁଡ଼ିକ ଦେଖ ।)

## ୧୦) ପରଧନ :

ଉତ୍ତର : ୯୦୨ (ବୁଢ଼ୀଆଣୀ ଜାଲ ମଝି ସଂଖ୍ୟାଟି ୮୧ । ତା ଉଭୟ ପାଖରେ ତିନୋଟି କରି ଯେଉଁ ସଂଖ୍ୟା / ଅଙ୍କ ଅଛି, ତାହା ଅଲଗା ଅଲଗା ଯୋଗକର । ପ୍ରତି ବିପରିତ ପାଖର ଯୋଗ ଫଳକୁ ଏକ ନିର୍ଦ୍ଦିଷ୍ଟ କ୍ରମରେ ଯୋଗ, ବିୟୋଗ, ଗୁଣନ, ଓ ଭାଗ କଲେ ମଝି ସଂଖ୍ୟା ସବୁବେଳେ ୮୧ ହିଁ ଆସିବ । ସେହି ସୂତ୍ର ଅନୁସାରେ ଖାଲିଥିବା ଘରେ ୯୦୨ ଲେଖାହେବ ।)

## ୧୧) ପଣ୍ଡିତଙ୍କ ଯୋଇଁ ଖୋଜା :

ଉତ୍ତର : ନାମର ପ୍ରଥମ ଅକ୍ଷର 'ଢ' ହେବାକୁ ପଡ଼ିବ । (ପଣ୍ଡିତଙ୍କ ଝିଅମାନଙ୍କ ନାଁ ଗୁଡ଼ିକର ପ୍ରଥମ ଅକ୍ଷର ଯଥାକ୍ରମେ କ, ଚ, ଟ, ତ, ପ, ସେହି କ୍ରମରେ ଯୋଇଁ ମାନଙ୍କର ନାଁର ପ୍ରଥମ ଅକ୍ଷର ଘ, ଝ, ଢ଼, ଧ, ଭ ହେବା ଦରକାର । ପଣ୍ଡିତେ ସବୁ ଯୋଇଁ ପାଇଗଲେ । ହେଲେ ଟିକିଲୀ ପାଇଁ 'ଢ' ଅକ୍ଷର ପ୍ରଥମେ ଥିବା କୌଣସି ନାଁର ପିଲା ସେ ପାଉନାହାନ୍ତି ।)

## ୧୨) ବିଜ୍ଞାନ ଖେଳ :

ଉତ୍ତର : ପ୍ଲାଷ୍ଟିକ୍ ବୋତଲ ଭିତରେ ବାୟୁଥିବା ହେତୁ ବେଲୁନ୍ ଆଦୌ ଫୁଲିବ ନାହିଁ । ବୋତଲରେ କଣାଟିଏ କରିଦିଅ ଏବଂ ବେଲୁନ୍ ଫୁଙ୍କ । ତା' ଦ୍ୱାରା ବୋତଲ ଭିତରେ ଥିବା ବାୟୁ କଣା ଦେଇ ବାହାରକୁ ଚାଲିଯିବ ଏବଂ ସେ ସ୍ଥାନକୁ ବେଲୁନ୍ ଦଖଲ କରିବ । ଖୁବ୍ ଜୋର୍‌ରେ ଫୁଙ୍କିଲେ ବେଲୁନ୍‌ଟି ବଡ଼ ଆକାର ହେବ ଏବଂ ଠିକ୍ ଏହି ସମୟରେ ଆଙ୍ଗୁଠି ଟିପ ଦ୍ୱାରା କଣାଟିକୁ ଚାପିଧର । ଏବଂ ମହମ କିମ୍ବା ଅଠା ଦେଇ ବନ୍ଦ କରି ଦିଅ । ଦେଖିବ ବୋତଲ ମୁହଁ ଆଉ ବନ୍ଦ ନକଲେ ମଧ ବେଲୁନ୍‌ରେ ପବନ ରହିଥିବ । (ନିଜେ କରି ଦେଖ, କେତେ ମଜାଦାର ଖେଳ ।)

Source: Author, Digitized by PPRACHIN, SOA

**୧୩) ବିଚିତ୍ର ଭବନ :**

ଉତ୍ତର : ବିଚିତ୍ର ଭବନର ପ୍ରକୃତ ନିର୍ମାତା ଶ୍ରମିକ ଓ କାରିଗରମାନେ । (ରାଜାମାନେ ମଠ, ମନ୍ଦିର, ଭବନ ଆଦି ନିର୍ମାଣ କରାଇଥାନ୍ତି, କରିଥାନ୍ତି ଶ୍ରମିକମାନେ)

**୧୪) ବଢ଼ିବ ନା କମିବ :**

ଉତ୍ତର : କମିବ । (କୌଣସି ବସ୍ତୁ ନିଜ ଓଜନର ଜଳ ଅପସାରଣ କଲେ ହିଁ ପାଣିଉପରେ ଭାସିପାରେ । କିନ୍ତୁ ତାହା ବୁଡ଼ିଲେ ନିଜ ଆୟତନର ଜଳ ଅପସାରିତ କରେ, ଯାହା ବସ୍ତୁଟିର ଓଜନ ଅନୁପାତରେ କମ୍ । ତେଣୁ ଜଳସ୍ତର କମିବା ସ୍ୱାଭାବିକ । ଏଖେଳଟି ତୁମେ ନିଜେ କରି ଦେଖିପାର ।)

**୧୫) ମୋ ଭାରତ ମହାନ୍ :**

ଉତ୍ତର : ମହେନ୍ଦ୍ର – ଆସାମର ଲୋକ

ଦେବେନ୍ଦ୍ର – ଆନ୍ଧ୍ରପ୍ରଦେଶର ଲୋକ

ରବିନ୍ଦ୍ର – ତାମିଲ୍‌ନାଡୁର ଲୋକ

ହେମେନ୍ଦ୍ର – ଜାମ୍ମୁକାଶ୍ମୀରର ଲୋକ



Source: Author, Digitized by PPRACHIN, SOA

